ଜୟ ଜୟ ଜୟ

# ହନୁମାନ ଗୋସାଇଁ



ସଂକଳନ ଓ ସଂପାଦନା

**ସତ୍ୟାନନ୍ଦ ଚମ୍ପତିରାୟ**

ଜୟ ଜୟ ଜୟ

# ହନୁମାନ ଗୋସାଇଁ



ରଘୁପତି ଆଶ୍ରମ

ସରପାରି, ଖୋର୍ଦ୍ଧା

ଆଜନ୍ମ ସ୍ୱେଚ୍ଛାସେବୀ, ମିଷ୍ଟଭାଷୀ, ତଥା ପରମ ପୁଣ୍ୟମୟୀ
ଶ୍ରୀମତୀ କିରଣ ପଣ୍ଡାଙ୍କ ପ୍ରରୋଚନା - ପ୍ରସୂତ

# ଜୟ ଜୟ ଜୟ ହନୁମାନ ଗୋସାଇଁ


**ସଂକଳକ**
ସତ୍ୟାନନ୍ଦ ଚମ୍ପତିରାୟ
ଭକ୍ତମଧୁନଗର (ଗଣ୍ଡମୁଣ୍ଡା)
୫୭୬, ଭୂମିକା, ଖଣ୍ଡଗିରି
ଭୁବନେଶ୍ୱର- ୩୦

**ପରିବେଶକ**
ରଘୁପତି ପ୍ରକାଶିନୀ
ସରପାରି, ଖୋର୍ଦ୍ଧା, ୨୦୦୯

**ପ୍ରଚ୍ଛଦ ଛାୟାଚିତ୍ର**
ଶ୍ରୀ ବରୁଣ କୁମାର ସାମନ୍ତସିଂହାର
ଶ୍ରୀ ବାଣୀଦତ୍ତ ଚମ୍ପତିରାୟ

**ଡ଼ି.ଟି.ପି**
ଏକ୍ସେଲ ସିଷ୍ଟମସ୍
୧୦୯୬, ଜଗମୋହନ ନଗର,
ଖଣ୍ଡଗିରି, ଭୁବନେଶ୍ୱର - ୩୦

**ମୁଦ୍ରଣ**
ପେଜ୍ ମେକର
୧୧୭, ବାପୁଜୀ ନଗର, ଭୁବନେଶ୍ୱର

**ମୂଲ୍ୟ : ଟ ୪୫.୦୦**

# ଜୟ ଜୟ ଜୟ
# ହନୁମାନ ଗୋସାଇଁ

## ସୂଚୀପତ୍ର


| ଲେଖା ଓ ଲେଖକ | ପୃଷ୍ଠାଙ୍କ |
|---|---|
| ୧. ଶ୍ରୀ ଆଞ୍ଜନେୟ ସୁପ୍ରଭାତମ୍ | ୧ |
| ୨. ହନୁମତ୍ ସ୍ତୁତିଃ<br>(ଆନନ୍ଦ ରାମାୟଣ) | ୫ |
| ୩. ଦୁଇଟି ସ୍ମରଣୀୟ ଘଟଣା<br>ସ୍ୱାମୀ ଶିବାନନ୍ଦ | ୬ |
| ୪. ମୂର୍ତ୍ତିହିଁ ଦେବତ୍ୱର ଦିଗ୍‌ଦର୍ଶକ<br>ଭଗବାନ ଶ୍ରୀ ସତ୍ୟସାଇ | ୧୦ |
| ୫. ପରାଶର ସଂହିତାରେ ଶ୍ରୀ ହନୁମାନ<br>ଡ଼କ୍ଟର ଭି.ଭି.ବି ରାମାରାଓ | ୧୫ |
| ୬. ରାମଭକ୍ତ ଶ୍ରୀ ହନୁମାନ୍<br>୰ ଶ୍ରୀମତ୍ ସ୍ୱାମୀ ହରିଚରଣ ଦାସ ମହାରାଜ | ୧୮ |
| ୭. ଦେବତା କୋଟିର ଅଞ୍ଜନାସୁତ କେଶରୀ ନନ୍ଦନ ଶ୍ରୀ ହନୁମାନ | ୨୦ |
| ୮. ରଘୁବୀରଙ୍କ ଅନନ୍ୟଭକ୍ତ ମହାବୀର ଶ୍ରୀ ହନୁମାନ<br>ଶ୍ରୀ ରାଜେନ୍ଦ୍ରଜୀ ଶର୍ମା | ୨୫ |
| ୯. ଶ୍ରୀ ହନୁମାନଜୀ ଏବଂ "ଓଁ"କାର ଏକ ତତ୍ତ୍ୱ<br>ପଣ୍ଡିତ ଶ୍ରୀ ଶ୍ରୀକଣ୍ଠଜୀ ଶର୍ମା ଶାସ୍ତ୍ରୀ | ୩୨ |
| ୧୦. ଶ୍ରୀ ହନୁମାନ<br>ଶ୍ରୀ ମହାମେଧାନନ୍ଦ ନାଥ ସରସ୍ୱତୀ | ୩୬ |
| ୧୧. ଶ୍ରୀ ହନୁମାନ ଚାଳିଶା<br>ଗୋସ୍ୱାମୀ ତୁଳସୀ ଦାସ | ୪୪ |

୧୨. ସଙ୍କଟମୋଚନ ହନୁମାନାଷ୍ଟକ ୪୬
ଗୋସ୍ୱାମୀ ତୁଳସୀ ଦାସ

୧୩. ଶ୍ରୀ ହନୁମାନ ଚାଳିଶା ୪୯
ଶ୍ରୀ ରାମଚନ୍ଦ୍ର ମିଶ୍ର

୧୪. ଶ୍ରୀ ହନୁମାନ ଉପାସନା- ପଞ୍ଚଯଜ୍ଞର ପ୍ରତୀକ ୭୧
ଡ଼କ୍ଟର ସଚ୍ଚିଦାନନ୍ଦ ପାଢ଼ୀ

୧୫. କାଳନେମୀହନ୍ତୀ ଶ୍ରୀ ହନୁମାନ ୭୮
ଶ୍ରୀ ଈଶ୍ୱର ଚନ୍ଦ୍ର ତ୍ରିପାଠୀ

୧୬. ବିନୟ ପତ୍ରିକାର ହନୁମତ୍ ଦ୍ୱାଦଶିକା ୮୧
ଗୋସ୍ୱାମୀ ତୁଳସୀଦାସ

୧୭. ସ୍ୱାମୀଙ୍କ ପାଖକୁ ସେବକର ଦଇନି-ପତ୍ରିକା (ଶ୍ରୀରାମ ଦ୍ୱାଦଶିକା) ୯୮
ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ

୧୮. ଶ୍ରୀ ହନୁମାନ ସହସ୍ରନାମ ପୂଜା ଅର୍ଚ୍ଚନା ୧୧୪

୨୦. ରଘୁପତି ଆଶ୍ରମ ୧୩୫

୨୧. ସ୍ତମ୍ଭକାରଙ୍କ ସବିନୟ ସ୍ୱୀକୃତି ୧୩୬

ସୀତାରାମ ସୀତାରାମ ସୀତାରାମ ସୀତାରାମ



**ମନୋଜବଂ ମାରୁତତୁଲ୍ୟବେଗଂ ଜିତେନ୍ଦ୍ରିୟଂ ବୁଦ୍ଧିମତାଂ ବରିଷ୍ଠମ୍ ।**
**ବାତାତ୍ମଜଂ ବାନରଯୂଥମୁଖ୍ୟଂ ଶ୍ରୀରାମଦୂତଂ ଶରଣଂ ପ୍ରପଦ୍ୟେ ॥**

*( ଯାହାଙ୍କର ମନ ସମାନ ଗତି ଓ ବାୟୁ ସମାନ ବେଗ, ଯେ ପରମ ଜିତେନ୍ଦ୍ରିୟ ଓ ଯେ ବୁଦ୍ଧିମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସେହି ପବନ ନନ୍ଦନ ବାନରାଗ୍ରଗଣ୍ୟ ଶ୍ରୀରାମଦୂତଙ୍କର ମୁଁ ଶରଣ ନେଉଅଛି ।)*

# ଶ୍ରୀ ଆଞ୍ଜନେୟ ସୁପ୍ରଭାତମ୍

ଅମଲ କନକବର୍ଣ୍ଣଂ ପ୍ରଜ୍ୱଳିତ ପାବକାକ୍ଷଂ
ସରସିଜ ନିଭ ବକ୍ତ୍ରଂ ସର୍ବଦା ସୁପ୍ରସନ୍ନମ୍,
ପଟୁତର ଘନଗାତ୍ରଂ କୁଣ୍ଡଳାଲଂକୃତାଙ୍ଗଂ
ରଣଜୟ କରବାଲଂ ରାମଦୂତ ନମାମି ॥୧॥

ଅଞ୍ଜନା ସୁପ୍ରଜାବୀର ପୂର୍ବ ସଂଧ୍ୟା ପ୍ରବର୍ତ୍ତତେ,
ଉତ୍ତିଷ୍ଠ ହରି-ଶାର୍ଦ୍ଦୂଳ କର୍ତ୍ତବ୍ୟଂ ଦୈବମାହ୍ନିକମ୍,
ଉତ୍ତିଷ୍ଠୋତ୍ତିଷ୍ଠ ହନୁମନ୍ ଉତ୍ତିଷ୍ଠ ବିଜୟଧ୍ୱଜ
ଉତ୍ତିଷ୍ଠ ବିରଜାକାନ୍ତ ତ୍ରୈଲୋକ୍ୟ - ମଙ୍ଗଳଂ କୁରୁ ॥୨॥

ଶ୍ରୀ ରାମଚନ୍ଦ୍ର-ଚରଣାମ୍ବୁଜ-ମତ୍ତଭୃଙ୍ଗ !
ଶ୍ରୀ ରାମଚନ୍ଦ୍ର-ଜପଶୀଳ-ଭବାବ୍ଧିପୋତ !
ଶ୍ରୀ ଜାନକୀ-ହୃଦୟ-ତାପ-ନିବାରମୂର୍ତ୍ତେ !
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ॥୩॥

ଶ୍ରୀରାମ-ଦିବ୍ୟ-ଚରିତାମୃତ - ସ୍ୱାଦ ଲୋଳ,
ଶ୍ରୀରାମ କିଙ୍କର-ଗୁଣାକାର-ଦୀନବନ୍ଧୋ !
ଶ୍ରୀରାମଭକ୍ତ ଜଗଦେକ -ମହୋଗ୍ର-ଶୌର୍ଯ୍ୟ !
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ॥୪॥

ସୁଗ୍ରୀବ ମିତ୍ର କପିଶେଖର ପୂର୍ଣ୍ଣମୂର୍ତ୍ତେ
ସୁଗ୍ରୀବ ରାଘବ ସମାଗମ ଦିବ୍ୟକୀର୍ତ୍ତେ ॥
ସୁଗ୍ରୀବ ମନ୍ତ୍ରୀବର ଶୂର କୁଳାଗ୍ରଗଣ୍ୟ
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ॥୫॥

ଭକ୍ତାରି ଭଞ୍ଜନ ଦୟାକର ଯୋଗୀବନ୍ଦ୍ୟ
ଶ୍ରୀ କେଶରୀ ପ୍ରିୟ ତନୂଜ-ସୁବର୍ଣ୍ଣ-ଦେହମ୍ ॥
ଶ୍ରୀ ଭାସ୍କରାତ୍ମଜ - ମନୋଭୃଙ୍ଗ- ଚଞ୍ଚରୀକ
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ॥୬॥

ଶ୍ରୀମାରୁତିପ୍ରିୟ ତନୂଜ-ମହାବଳାଢ୍ୟ
ମୈନାକ ବନ୍ଦିତ-ପଦାମ୍ବୁଜ-ଦଣ୍ଡିତାରିନ୍,
ଶ୍ରୀ ଉଷ୍ଟ୍ରବାହନ ସୁଲକ୍ଷଣ-ଲକ୍ଷିତାଙ୍ଗ
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ।।୭।।

ପଞ୍ଚାନନସ୍ୟ ଭବଭୀତି-ହରସ୍ୟ ରାମ -
ପାଦାବ୍ଜ ସେବନ ପରସ୍ୟ ପରାତ୍ପରସ୍ୟ,
ଶ୍ରୀ ଅଞ୍ଜନାପ୍ରିୟ ସୁତସ୍ୟ ସୁବିଗ୍ରହସ୍ୟ
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ।।୮।।

ଗନ୍ଧର୍ବ ଯକ୍ଷ ଭୁଜଗାଧିପ କିନ୍ନରାର୍ଚି
ରାଦିତ୍ୟ ବିଶ୍ୱ ବସୁ ରୁଦ୍ର ସୁରର୍ଷିସଂଘଃ,
ସଂକୀର୍ତୟନ୍ତି ତବ ଦିବ୍ୟ ସୁନାମ ପଂକ୍ତିଂ
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ।।୯।।

ଶ୍ରୀ ଗୌତମ-ଚ୍ୟବନ ତୁମ୍ବୁର ନାରଦାତ୍ରି -
ମୈତ୍ରେୟ ବ୍ୟାସ ଜନକାଦି ମହର୍ଷିସଂଘଃ,
ଗାୟନ୍ତି ହର୍ଷ ଭରେଣ ତବ ଦିବ୍ୟକୀର୍ତିଂ
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ।।୧୦।।

ଭୃଙ୍ଗାଂ ବଳୀତ ମକରନ୍ଦ ରସଂ ପିବେଦ୍ୱୈ
କୁଞ୍ଜଂ ତୃଦର୍ଦ୍ଧ-ମଧୁରଂ ଚରଣାୟୁଧାଦ୍ୟୈଃ,
ଦେବାଳୟେ ଗଣ ଗଭୀର ସୁଶଂଖଂ ଘୋଷଃ
ନିର୍ଯ୍ୟାନ୍ତି ବୀର ହନୁମନ୍ ତବ ସୁପ୍ରଭାତମ୍ ।।୧୧।।

ପମ୍ପା ସରୋବର ସୁପୁଣ୍ୟ ପବିତ୍ର ତୀର୍ଥଂ
ମନ୍ଦାୟ ହୋମ ନଳ ଶୈ୍ୟଶତ ମହର୍ଷିସଂଘଃ,
ତିଷ୍ଠନ୍ତି ତ୍ୱଚ୍ଚରଣ ପଙ୍କଜ ସେବନାର୍ଥଂ
ଶ୍ରୀ ବୀରଧୀର ହନୁମନ୍ ତବ ସୁପ୍ରଭାତମ୍ ॥୧୨॥



ବି.ଦ୍ର.: -

"ଶ୍ରୀ ଆଞ୍ଜନେୟ ସୁପ୍ରଭାତମ୍" ଶ୍ଳୋକଟିର ରଚୟିତା କିଏ ତାହା କାହାରିକୁ ଜଣା ନାହିଁ। ହଠାତ୍ ଦିନେ ମୋର ଏକ 'ଚେମ୍ବରର୍ସ ଇଂଲିଶ ଅଭିଧାନ' ବହି ଭିତରୁ ନାଲି ଅକ୍ଷରରେ ଲିଖିତ ଖଣ୍ଡେ ଜୀର୍ଣ୍ଣ ଶୀର୍ଣ୍ଣ କାଗଜ ବାହାରି ପଡ଼ିଲା। ଦେଖିଲା ବେଳକୁ ତାହା ଏଇ 'ଶ୍ରୀ ଆଞ୍ଜନେୟ ସୁପ୍ରଭାତମ୍"। ସତେ ଯେମିତି "ଜୟ ଜୟ ଜୟ ହନୁମାନ ଗୋସାଇଁ" ର ଆଦ୍ୟ ବନ୍ଦନା ପାଇଁ ଲେଖାଟି ଉଦ୍ଦିଷ୍ଟ ହୋଇ ରହିଥିଲା। ଧନ୍ୟ ହନୁମାନ ମହିମା.!!

(ସତ୍ୟାନନ୍ଦ ଚମ୍ପତିରାୟ)

# ହନୁମତ୍ ସ୍ତୁତିଃ

ହନୁମାନଞ୍ଜନାସୂନୁର୍ବାୟୁପୁତ୍ରୋ ମହାବଳ,
ରାମେଷ୍ଟଃ ଫାଲ୍‌ଗୁନସଖଃ ପିଙ୍ଗାକ୍ଷୋଽମିତବିକ୍ରମଃ ।
ଉଦଧିକ୍ରମଣଶ୍ଚୈବ ସୀତାଶୋକ ବିନାଶନଃ,
ଲକ୍ଷ୍ମଣପ୍ରାଣଦାତା ଚ ଦଶଗ୍ରୀବସ୍ୟ ଦର୍ପହା ।

ଏବଂ ଦ୍ୱାଦଶ ନାମାନି କପୀନ୍ଦ୍ରସ୍ୟ ମହାତ୍ମନଃ,
ସ୍ୱାପକାଳେ ପ୍ରବୋଧେ ଚ ଯାତ୍ରାକାଳେ ଚ ଯଃ ପଠେତ୍;
ତସ୍ୟ ସର୍ବଭୟଂ ନାସ୍ତି ରଣେ ଚ ବିଜୟୀ ଭବେତ୍ ॥

(ଆନନ୍ଦ ରାମାୟଣ, ମନୋହର କାଣ୍ଡ ୧୩, ୮-୧୧)

(ଭଗବାନ ଶ୍ରୀ ରାମଙ୍କର ଅତୀବ ପ୍ରିୟ ଓ ସୁହୃଦ, ଅର୍ଜୁନଙ୍କ ସଖା, ପିଙ୍ଗାକ୍ଷଲୋଚନ, ଅମିତ ବଳଶାଳୀ, ସମୁଦ୍ର ଲଂଘନକାରୀ, ସୀତାଶୋକ ନାଶକାରୀ, ଲକ୍ଷ୍ମଣଙ୍କ ପ୍ରାଣଦାତା, ଦଶଗ୍ରୀବ-ରାବଣ ଦର୍ପହାରୀ, ମହାତ୍ମା କପୀନ୍ଦ୍ରଙ୍କ ଏହି ହେଉଛି ଦ୍ୱାଦଶ ନାମ ।

ଏହି ଦ୍ୱାଦଶ ନାମକୁ ଶୋଇବା ଚେଇଁବା ଓ ଯାତ୍ରା କରିବା କାଳରେ ଯେ ଜପ କରନ୍ତି ତାଙ୍କର ସକଳ ପ୍ରକାର ଭୟ ଦୂରୀଭୂତ ହୋଇଥାଏ । ସେ ରଣରେ ବିଜୟୀ ହୁଅନ୍ତି । ରାଜ ଦ୍ୱାରରେ ବା ନିର୍ଜନ ପଥରେ କଦାପି ତାଙ୍କର ଭୟ ରହେ ନାହିଁ ।)



# ହନୁମାନଙ୍କ ଜୀବନର
# ଦୁଇଟି ସ୍ମରଣୀୟ ଘଟଣା

ସ୍ୱାମୀ ଶିବାନନ୍ଦ

ଶ୍ରୀରାମଚନ୍ଦ୍ରଙ୍କ ଭକ୍ତମାନଙ୍କ ମଧ୍ୟରେ ହନୁମାନ ସର୍ବଶ୍ରେଷ୍ଠ। ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଅମୃତମୟୀ ଗାଥାବଳି ଶୁଣିବା ମାତ୍ରେ ଭକ୍ତରାଜ ହନୁମାନ ଏପରି ଆନନ୍ଦରେ ବିଭୋର ହୋଇଥାନ୍ତି ଯେ ତାଙ୍କ ଚକ୍ଷୁରୁ ଭକ୍ତିରସାପ୍ଲୁତ ଅଶ୍ରୁର ନିରବଚ୍ଛିନ୍ନ ଧାରା ବହିବାକୁ ଲାଗେ ଏବଂ ତାଙ୍କର ସ୍ୱର ଭାବୋଚ୍ଛ୍ୱାସରେ ରୁଦ୍ଧ ହୋଇଥାଏ। ଯେଉଁଠି ଯେଉଁଠି ଭଗବାନ ଶ୍ରୀରାମଚନ୍ଦ୍ରଙ୍କ କଥାକୀର୍ତ୍ତନ ଚାଲିଥାଏ, ହନୁମାନ ସେଠାରେ ପହଞ୍ଚିଯାଆନ୍ତି ଏବଂ ଏକ ଅପାର୍ଥିବ ଆନନ୍ଦ ଅନୁଭବ କରିବା ସଙ୍ଗେ ସଙ୍ଗେ ତାହା ମନଯୋଗ ଦେଇ ଶୁଣନ୍ତି।

ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଲୀଳାରେ ସହଯୋଗ କରିବା ପାଇଁ ତ୍ରେତାଯୁଗରେ ଭକ୍ତରାଜ ହନୁମାନଙ୍କର ଆବିର୍ଭାବ ହୋଇଥିଲା। ମାତା ସୀତାଙ୍କଠାରୁ ସେ ଅମରବର ପାଇଥିଲେ ଏବଂ ଏହା ପାଇ ସେ ଅତ୍ୟଧିକ ଆନନ୍ଦିତ ହୋଇଥିଲେ। ସେ ଦୀର୍ଘଦିନ ପୃଥିବୀରେ ରହିବା ପାଇଁ ପ୍ରାର୍ଥନା କରିଥିଲେ।

ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଗୁଣଗାନ ଓ କଥାକୀର୍ତ୍ତନ ହେଉଥିବା ପର୍ଯ୍ୟନ୍ତ ସେ ପୃଥିବୀରେ ରହିବା ପାଇଁ ବର ପ୍ରାର୍ଥନା କରିଥିଲେ। ତେଣୁ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଲୀଳାକଥା ଶୁଣିବା ପାଇଁ ସେ ଚିରଦିନ ପାଇଁ ପୃଥିବୀରେ ରହିଛନ୍ତି।

ମୁଁ ଯେତେବେଳେ ତୀର୍ଥଯାତ୍ରା ପାଇଁ ଦକ୍ଷିଣ ଭାରତରେ ପରିଭ୍ରମଣ କରୁଥିଲି ସେତେବେଳେ ସନ୍ଥ ଏକନାଥଙ୍କର ଜନ୍ମସ୍ଥାନ ପନ୍ଧରପୁର ଏବଂ ପୈଠାନ୍‌କୁ ଯାଇଥିଲି। ସେଠାରେ ମୁଁ ଏହି ଲୋକପ୍ରଚଳିତ ସ୍ମରଣୀୟ ଘଟଣା ବିଷୟରେ ଶୁଣିଥିଲି।

ସନ୍ଥ ଏକନାଥ ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଜଣେ ଶ୍ରେଷ୍ଠ ଭକ୍ତ। ସେ ୧୫୩୩ ମସିହାରେ ସାଧକ ଭାନୁଦାସଙ୍କ ପରିବାରରେ ଜନ୍ମଗ୍ରହଣ କରିଥିଲେ। ସେ ରାମାୟଣରୁ ପୌରାଣିକ ଓ ଆଧାତ୍ମିକ କଥା ଲୋକମାନଙ୍କୁ କହୁଥିଲେ ଏବଂ ଏହା ତାଙ୍କର ବୃତ୍ତିଗତ ବ୍ୟବସାୟ ଥିଲା।

ଥରେ ସନ୍ଥ ଏକନାଥ ରାମାୟଣରୁ ଏକ ନିର୍ଦ୍ଦିଷ୍ଟ ଘଟଣା ବର୍ଣ୍ଣନା କରୁକରୁ କହିଲେ ଶ୍ରୀ ରାମଚନ୍ଦ୍ରଙ୍କର କୌଣସି ଭକ୍ତ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲେ ଏବଂ ନିରବଚ୍ଛିନ୍ନ ଭାବରେ ଶ୍ରୀରାମଚନ୍ଦ୍ରଙ୍କର ପବିତ୍ର ନାମ ଗାନ କରୁଥିଲେ, ସେ ଅତି ସହଜରେ ଜନ୍ମମୃତ୍ୟୁମୟ ସଂସାର ଚକ୍ରକୁ ଅତିକ୍ରମ କରି ପାରିବେ।

କାରଣ -

**"ବିଶ୍ୱସ୍ୟାଖିଳତାରଙ୍କ ରଘୁପତେର୍ନାମୈବୟତ୍ କେବଲଂ।**
**ତୀର୍ଣ୍ଣୋ ମାରୁତିରର୍ଣ୍ଣବଂ ପ୍ରତିମୟଂ ଲୋଲୋର୍ମିମାଳା କୁଳମ୍।।**

ଶ୍ରୀରାମଙ୍କ ନାମରେ ଅଟଳ ବିଶ୍ୱାସ ଆତ୍ମପ୍ରତ୍ୟୟ ଶକ୍ତି ପ୍ରତିଷ୍ଠା କରିବାକଥା। ବାୟୁଦେବଙ୍କ ପୁତ୍ର ଭକ୍ତ ହନୁମାନଙ୍କର ଶ୍ରୀରାମନାମରେ ଅଟଳ ବିଶ୍ୱାସଥିଲା, ସେଥିପାଇଁ ସେ ଅବିରତ ରାମନାମ ଜପ କରୁଥିଲେ। ଏହି କାରଣରୁ ହନୁମାନଜୀ ଏକଲମ୍ଫରେ ବିଶାଳ ସମୁଦ୍ରକୁ ଲଂଘନ କରିବାକୁ ସକ୍ଷମ ହୋଇଥିଲେ।

ସମୁଦ୍ରଲଂଘନ କରିବାପରେ ଭକ୍ତ ହନୁମାନଜୀ ଅଶୋକବାଟିକାରେ ଅସଂଖ୍ୟ ଧବଳଫୁଲ ଫୁଟିଥିବାର ଦେଖିଲେ। ସନ୍ଥ ଏକନାଥ ଅଶୋକ ବାଟିକା କଥା କହି ଚାଲିଥିଲେ।

ସେହି ସଭାରେ ଭକ୍ତରାଜ ହନୁମାନ ଉପସ୍ଥିତ ଥିଲେ ଏବଂ ସନ୍ଥଏକନାଥଙ୍କର ଭାଷଣ ମନଯୋଗପୂର୍ବକ ଶୁଣୁଥିଲେ। ସନ୍ଥ ଏକନାଥଙ୍କର ପ୍ରବଚନକୁ ପ୍ରତିରୋଧ କରି ହନୁମାନ ନିଜକୁ ପ୍ରତ୍ୟକ୍ଷରେ ଦେଖାଦେଇ କହିଲେ- "ସନ୍ଥଜୀ, ମୁଁ ହେଉଛି ମାରୁତି, କିନ୍ତୁ ମୁଁ କହିବାକୁ ଚାହେଁ ଯେ ସେଠାରେ ମୁଁ ଗୋଟିଏ ହେଲେ ଧଳାଫୁଲ ଦେଖି ନଥିଲି"।

ସନ୍ଥଏକନାଥ ମଧ ଜଣେ ସିଦ୍ଧ ମହାତ୍ମା। ସେ ହନୁମାନଜୀଙ୍କର ବକ୍ତବ୍ୟକୁ ପ୍ରତିରୋଧ କରି କହିଲେ - "ହନୁମାନଜୀ ମୋତେ କ୍ଷମା କରିବେ। ମୁଁ ଯେତେବେଳେ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ କଥା କୀର୍ତ୍ତନ କରେ ସେତେବେଳେ ପ୍ରଭୁଙ୍କ କୃପାରୁ ମୁଁ ସେ ସମସ୍ତ ସ୍ୱଚକ୍ଷୁରେ ଦେଖେ ଏବଂ ତାହାହିଁ ବର୍ଣ୍ଣନା କରେ।

ତେଣୁ ଦୁଇ ଶ୍ରେଷ୍ଠ ଭକ୍ତଙ୍କ ମଧରେ ଯେତେବେଳେ ଏପରି ଏକ ବିବଦମାନ ପରିସ୍ଥିତି ଉପୁଜିଲା, ସେତେବେଳ ଭଗବାନ ଶ୍ରୀରାମଚନ୍ଦ୍ର ପ୍ରତ୍ୟକ୍ଷ ଆବିର୍ଭୂତ ହୋଇ

ସେହି ଅଶୋଭନୀୟ ପରିସ୍ଥିତିର ସମାଧାନ କରିବା ପାଇଁ କହିଲେ, "ମୋର ପ୍ରିୟ ଭକ୍ତଦ୍ୱୟ ଉଭୟଙ୍କର କଥା ପୁରାପୁରି ସତ୍ୟ। ହନୁମାନ ଅଶୋକ ବାଟିକାରେ ପ୍ରବେଶ କରିବା ସମୟରେ ମା'ସୀତାଙ୍କୁ ବନ୍ଦି ଅବସ୍ଥାରେ ଦେଖି ତାଙ୍କର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଯାଇଥିଲା। ତେଣୁ ସେ ଚକ୍ଷୁ ସମକ୍ଷରେ ଯାହା କିଛି ଦେଖୁଥିଲେ ତାହା ରକ୍ତବର୍ଣ୍ଣ ଜଣାପଡୁଥିଲା। କିନ୍ତୁ ବାସ୍ତବରେ ଫୁଲଗୁଡ଼ିକ ଧଳା ବର୍ଣ୍ଣର ଥିଲା।

ତୁମେ କ'ଣ ଜାଣ ନାହିଁ ଯେ ଜଣେ ନାଲିରଙ୍ଗର ଚଷମା ପିନ୍ଧି ଯାହାକିଛି ଦେଖନ୍ତି, ତାହା ତାଙ୍କୁ ନାଲିବର୍ଣ୍ଣର ଦେଖାଯାଏ ନାହିଁକି ?"

ତେଣୁ ଉଭୟଙ୍କର ବିବାଦର ସମାଧାନ ହେଲା; ଉଭୟ ଭଗବାନଙ୍କୁ ପ୍ରଣାମ କଲେ ଏବଂ ଭଗବାନଙ୍କର ଦର୍ଶନ ଲାଭକରି କୃତକୃତ୍ୟ ହୋଇଗଲେ।

## ଦ୍ୱିତୀୟ ଘଟଣା :

ସେହିବର୍ଷ ଦକ୍ଷିଣ ଭାରତ ଭ୍ରମଣ ଶେଷ କରି ମୁଁ ଭଗବାନ ବିଶ୍ୱନାଥଙ୍କ ସ୍ଥାନ, ବାରାଣସୀରେ ପହଞ୍ଚିଲି। କଥିତ ଅଛି ଭଗବାନ ଶିବଙ୍କର ତ୍ରିଶୁଳ ଉପରେ ବାରାଣସୀର ଅବସ୍ଥିତି।

ବାରାଣସୀର ଅନେକାନେକ ମନ୍ଦିର ମଧ୍ୟରେ ମୁଁ "ସଙ୍କଟମୋଚନ ମନ୍ଦିର" ନାମରେ ଗୋଟିଏ ମନ୍ଦିର ଦେଖିଲି; ଯାହାକି ଲଙ୍କା ନାମରେ ଖ୍ୟାତ ଥିଲା ଏବଂ ତାହା ବାରାଣସୀ ସହରର ଗୋଟିଏ କଡ଼ରେ ଥିଲା।

ବାରାଣସୀ ଗଙ୍ଗାର ପଶ୍ଚିମକୂଳରେ ଅବସ୍ଥିତ ଏବଂ ସେଥିଯୋଗୁ ଅସଂଖ୍ୟ ସ୍ନାନଘାଟ ତନ୍ମଧ୍ୟରେ ଅଛି। ସେଥିମଧ୍ୟରୁ ଦଶାଶ୍ୱମେଧ ଘାଟ ସେମାନଙ୍କ ମଧ୍ୟରେ ପ୍ରସିଦ୍ଧ। ପ୍ରବାଦ ଅଛି ସୃଷ୍ଟିକର୍ତ୍ତା ବ୍ରହ୍ମା ସେଠାରେ ଦଶଟି ଅଶ୍ୱମେଧ ଯଜ୍ଞ କରିଥିଲେ।

ତେଣୁ ବାରାଣସୀ ଏକ ପବିତ୍ର କ୍ଷେତ୍ର ନାମରେ ପ୍ରସିଦ୍ଧ। ପ୍ରତ୍ୟେକଦିନ ସନ୍ଧ୍ୟାରେ ଗଙ୍ଗାକୂଳରେ ଆଧ୍ୟାତ୍ମିକ ପ୍ରବଚନ ହୁଏ ଏବଂ ଅସଂଖ୍ୟ ଭକ୍ତ ସେହି ପ୍ରବଚନ ଶୁଣିବାକୁ ସେଠାରେ ଏକତ୍ରିତ ହୁଅନ୍ତି।

ଦିନେ ସନ୍ଧ୍ୟାରେ ଜଣେ ପଣ୍ଡିତ ରାମାୟଣ ପ୍ରବଚନ ଦେଉଥିଲେ ଏବଂ ପୂର୍ବପରି ଲୋକମାନେ ତାହା ଶୁଣୁଥିଲେ। ସେଦିନ ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ଦେଖିଲେ ଯେ

ଶ୍ରୋତାଙ୍କ ମଧ୍ୟରେ ଜଣେ ଦୀର୍ଘକାୟ ଲୋକ ବସିଛନ୍ତି। ତାଙ୍କର ମୁଖ ଆନନ୍ଦରେ ଉଦ୍ଭାସିତ ହେଉଛି । ଉତ୍କଣ୍ଠାବଶତଃ ତାଙ୍କ ସମ୍ବନ୍ଧରେ ଜାଣିବାପାଇଁ ସେହି ଶ୍ରୋତାଙ୍କର ଇଚ୍ଛା ହେଲା ଏବଂ ସେ ତାଙ୍କୁ ବାରମ୍ବାର ଚାହିଁବାକୁ ଲାଗିଲେ।

ପ୍ରବଚନ ଶେଷ ହେବାମାତ୍ରେ ଶ୍ରୋତାମାନେ ଚାଲିଯିବାରୁ ସେହି ଶ୍ରୋତାଜଣକ ଚାଲି ଯାଉଥିବା ସେହି ଦୀର୍ଘକାୟ ବ୍ୟକ୍ତିଙ୍କୁ ଅନୁଗମନ କରିବାକୁ ଲାଗିଲେ। ତାଙ୍କର ଇଚ୍ଛା ସେହି ବ୍ୟକ୍ତିଙ୍କୁ ଚିହ୍ନିବା ଏବଂ ଜାଣିବା। ଚାଲୁଥିବା ସମୟରେ ଦୀର୍ଘକାୟ ବ୍ୟକ୍ତିଜଣକ ଦେଖିଲେ ତାଙ୍କୁ ଜଣେ ଅନୁଗମନ କରୁଛି। ଅବଶେଷରେ ସହରର ବାହାରେ ଏକ ବୁଦାଳିଆ ସ୍ଥାନରେ ସେ ଯାଇ ପହଞ୍ଚିଲେ। ସେଠାରେ ଦୀର୍ଘକାୟ ବ୍ୟକ୍ତିଟି ତାଙ୍କ ପଛରେ ଚାଲୁଥିବା ବ୍ୟକ୍ତିଙ୍କୁ ପଚାରିଲେ, "ତୁମେ କାହିଁକି ମୋତେ ଅନୁଗମନ କରୁଛ ?" ସେହି ବ୍ୟକ୍ତିଟି କହିଲେ, "ମୁଁ ଆପଣଙ୍କ ପରିଚୟ ଜାଣିବାକୁ ଇଚ୍ଛା କରୁଛି।" ଏହିକଥା କହିବାମାତ୍ରେ, ଆଖିପଲକ ମଧ୍ୟରେ ଦୀର୍ଘକାୟ ବ୍ୟକ୍ତିଟି ଅଦୃଶ୍ୟ ହୋଇଗଲେ ଏବଂ ଗୋଟିଏ ଶୂନ୍ୟବାଣୀ ହେଲା - "ତୁମେ ଜାଣ ଯେ, ମୁଁ ହେଉଛି ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଭକ୍ତ ପବନପୁତ୍ର ହନୁମାନ।"

ଏହିକଥା ଶୁଣିବା ମାତ୍ରେ ଅଦୃଶ୍ୟ ହୋଇଥିବା ସ୍ଥାନର କଥା ଲୋକମାନେ ଯେତେବେଳେ ଜାଣିଲେ, ସେତେବେଳେ ସେହି ସ୍ଥାନରେ ସେମାନେ ଗୋଟିଏ ମନ୍ଦିର ନିର୍ମାଣ କରିଦେଲେ ଏବଂ ତାହାହିଁ ହେଉଛି ବାରାଣସୀର "ସଙ୍କଟମୋଚନ ମନ୍ଦିର"।

ଭାଷାନ୍ତର : ସ୍ୱାମୀ ତ୍ୟାଗସ୍ୱରୂପାନନ୍ଦ ସରସ୍ୱତୀ



# ମୂର୍ତ୍ତି ହିଁ
# ଦେବତ୍ୱର ଦିଗ୍‌ଦର୍ଶକ

*ଭଗବାନ ସତ୍ୟସାଇ ବାବା (ପୁଟପର୍ତ୍ତି)*

(ବିଶ୍ୱର ଆଧାର ପରଂବ୍ରହ୍ମ। ସେପରି ସତ୍ୟ ହିଁ କେବଳ ପରଂବ୍ରହ୍ମଙ୍କ ସାରାଂଶ। ପୁଣି ସେ ସତ୍ୟ ହେଉଛି ଦିବ୍ୟାତ୍ମାଙ୍କର ଗୁଣ। ଏଇ ଦିବ୍ୟାତ୍ମାମାନେ ପ୍ରକୃତରେ ଦେବତା ।)

## ପ୍ରେମ ହିଁ ଅବତାର

ଆମର ପୁରାଣ ପୁରୁଷ ମୁନି ଋଷିମାନେ ବିଭିନ୍ନ ଉପାୟରେ ବା ମାର୍ଗରେ ଦିବ୍ୟତ୍ୱର ସ୍ୱରୂପ ଜାଣିବା ପାଇଁ ଚେଷ୍ଟା କରି ଆସୁଛନ୍ତି। କିନ୍ତୁ ଏହି ଦିବ୍ୟତ୍ୱ ବା ସତ୍ୟର ସ୍ୱରୂପକୁ ଜାଣିବାରେ ସେମାନେ ସଫଳ ହୋଇନପାରି ପ୍ରକୃତିକୁ ପୂଜା କରିଛନ୍ତି।

ଏହା ପରଠାରୁ ଭାରତୀୟମାନେ ମୂର୍ତ୍ତି ଆରାଧନାରେ ମନ ବଳାଇଲେ। ଏ ବିଶ୍ୱରେ ଜନ୍ମଗ୍ରହଣ କରିଥିବା ପ୍ରତ୍ୟେକ ପ୍ରାଣୀ ବା ଜୀବର ଏକ ନିର୍ଦ୍ଦିଷ୍ଟ ରୂପ ଅଛି। ସେ କାଷ୍ଠ ହେଉ ବା ପାଷାଣ ହେଉ, ମୃଣ୍ମୟ ବା କୌଣସି ଧାତୁ ନିର୍ମିତ ହୋଇଥାଉ। ପ୍ରତ୍ୟେକ ମୂର୍ତ୍ତି ଜଡ଼ ପ୍ରକୃତିର ଆଉ ସେ ସବୁ ଦୟା କରୁଣା ଧୈର୍ଯ୍ୟ ସହିଷ୍ଣୁତାଦି କୋମଳ ଭାବ ବିହୀନ। ଏହି କାରଣ ଯୋଗୁଁ କେତେକ ଲୋକ ମୂର୍ତ୍ତି ପୂଜା ବା ଆରାଧନାର ବିରୋଧ କରିଥାନ୍ତି।

ଏହା କେବଳ ଅଜ୍ଞାନତା ମାତ୍ର। ଯେ କୌଣସି ଦୂର ପଦାର୍ଥକୁ ଦେଖାଇବାକୁ ଗଲାବେଳେ ଆମେ ଆମର ବିଶି ଆଙ୍ଗୁଠିଟିକୁ ବ୍ୟବହାର କରିଥାଉଁ। ସେହିପରି ମୂର୍ତ୍ତି ହିଁ କେବଳ ଦିବ୍ୟତ୍ୱର ପରିଦର୍ଶକ। ଦେବତ୍ୱର ସନ୍ଧାନ ପାଇ ସାରିବା ପରେ ତୁମର ଆଉ କୌଣସି ମୂର୍ତ୍ତିର ପ୍ରୟୋଜନ ପଡ଼ି ନପାରେ। ଏହି ସବୁ ଦୃଷ୍ଟିରୁ ମୂର୍ତ୍ତି ପୂଜାର ବିରୋଧ କରାଯିବା ଉଚିତ୍ କି ?

ତୁମେ ତୁମର ସ୍ୱର୍ଗୀୟ ପିତା ମାତା ବା ଜେଜେ, ଜେଜେ ମା'ଙ୍କର ଫଟୋକୁ ବା ମୂର୍ତ୍ତିକୁ ଫୁଲ ଧୂପାଦି ଦେଇ ପୂଜା କରୁନାହଁ କି ? ଏହି ସବୁ ଫଟୋଗ୍ରାଫ ବା ଚିତ୍ର ଗୁଡ଼ିକର କଣ ଜୀବନ ଥାଏ ? ନା ସେ ସବୁରେ ଦୟା, ପ୍ରେମ, କରୁଣାର ଭାବ କିଛି ଥାଏ ? ତଥାପି ଏ ସବୁ ଫଟୋଗ୍ରାଫ ବା ଛବିକୁ ତୁମେ ପୂଜା କର। ଏହାର ତାତ୍ପର୍ଯ୍ୟ କଣ ?

ତାତ୍ପର୍ଯ୍ୟ ହେଉଛି ଏହି ସବୁ ଚିତ୍ର ଜରିଆରେ ଆମେ ଆମର ପୂର୍ବ ପୁରୁଷଙ୍କର ଗୁଣରାଜି ଓ ଯେଉଁ ଲକ୍ଷ୍ୟ ବା ଆଦର୍ଶ ପାଇଁ ସେମାନେ ତାଙ୍କର ଜୀବନ ଧାରା ଚଳାଇ ନେଇଥିଲେ, ତାହାରି ସ୍ମରଣ କରାଇ ଦେବା।

ଆଉ ଏକ ଦୃଷ୍ଟାନ୍ତ ଗ୍ରହଣ କରାଯାଉ। ତାହା ହେଉଛି ଖଣ୍ଡେ ଶହେ ଟଙ୍କିଆ ନୋଟ। ଛଅ ଇଞ୍ଚ ଲମ୍ବ ଓ ଚାରି ଇଞ୍ଚ ଓସାର। ଏଥିରେ ଜୀବନ ନାହିଁ କି ପ୍ରୀତି କରୁଣା ବା ଦୟା ଭାବ କିଛି ନାହିଁ। ପୃଥିବୀରେ ଜଣେ କିଏ ଲୋକ ଅଛି ଯେ କି ଟଙ୍କାକୁ ଭଲ ପାଏ ନାହିଁ। ଦେଶ ଜାତି ବା ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ଟଙ୍କାକୁ ଭଲ ପାଆନ୍ତି। ଟଙ୍କା ପାଇଁ ଜୀବନ ଝାସ ଦେଇ ଥିବାର ଦୃଷ୍ଟାନ୍ତ ଜଗତରେ ଅନେକ। କେବଳ ସରକାରୀ ମୋହର ଲାଗିଥିବାରୁ ଟଙ୍କାର ମୂଲ୍ୟ ବହୁତ ବଢ଼ି ଯାଇଛି।

ସେହିପରି ଯେଉଁ ମୂଲ୍ୟ ବା ଗୌରବ ବୋଧ ପାଇଁ ଆଜି ଆମେ ଆମର ଜାତୀୟ ପତାକାକୁ ସମ୍ମାନ ଜଣାଉଛୁ ତାହା କରୁଣା ବା କୋମଳତା ଭାବ ରହିତ ଏକ ଜଡ଼ ନିର୍ଜୀବ କନା ଖଣ୍ଡେ ମାତ୍ର। ତେଣୁ ଏଠାରେ ଜଣାଗଲା, ମୂର୍ତ୍ତି ପୂଜା ଯଦି ନିରର୍ଥକ ତେବେ ଶହେ ଟଙ୍କିଆ ନୋଟ ଖଣ୍ଡି ବା ଆମର ଜାତୀୟ ପତାକାଟି କଣ ନିରର୍ଥକ। ଯେଉଁମାନେ ମୂର୍ତ୍ତି ପୂଜାକୁ ବିରୋଧ କରନ୍ତି, ସେମାନେ ଏହାର ଭାବ ଭାବନା ଓ ଗୂଢ଼ାର୍ଥକୁ ନବୁଝି ଏପରି ଅପପ୍ରଚାର କରିଥାନ୍ତି।

## ସୃଷ୍ଟିର ଗଭୀର ତତ୍ତ୍ୱ

ଏବେ ଆମେ ଜଗତର ଗଭୀର ତତ୍ତ୍ୱ, ସୃଷ୍ଟି ବା ସୃଷ୍ଟିତତ୍ତ୍ୱ ଭିତରକୁ ପଶିବାକୁ ଯାଉଥାଇଁ। ଅତ୍ୟନ୍ତ ନିଷ୍ଠା ଓ ଏକାଗ୍ରତା ସହକାରେ ଏଥିରେ ମନୋନିବେଶ କଲେ ଜୀବନରେ ବହୁତ ଲାଭ ଓ ଆନନ୍ଦ ମିଳେ।

"ଈଶାବାସ୍ୟମ୍ ଇଦମ୍ ଜଗତ୍" ଏଇଟି ଈଶୋପନିଷଦର ପ୍ରଥମ ଅମୂଲ୍ୟ ମନ୍ତ୍ର। ଈଶ୍ୱର ଜଗତର ସୂକ୍ଷ୍ମାତିସୂକ୍ଷ୍ମ ବସ୍ତୁରେ ପ୍ରବେଶ କରି ପୁଣି ବାହାରକୁ ବାହାରି ଆସନ୍ତି। ତେଣୁ ପ୍ରତ୍ୟେକ ପ୍ରାଣୀ ବା ଜୀବ ଈଶ୍ୱରଙ୍କ ସ୍ୱରୂପ ଅଟନ୍ତି। "ବାସୁଦେବଃ ସର୍ବମିତି ସମହାତ୍ମା ସୁଦୁର୍ଲ୍ଲଭ।" (ଗୀତା)

ଗୀତାରେ ଭଗବାନ ପାର୍ଥଙ୍କୁ କହିଛନ୍ତି, "ଈଶ୍ୱର ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି।" ଈଶ୍ୱର ପ୍ରତ୍ୟେକ ଜୀବ ବା ପ୍ରାଣୀ ଭିତରେ ଚେତନା ରୂପରେ ବାସ କରନ୍ତି। ଈଶ୍ୱରଙ୍କର ଆଉ ଏକ ନାମ ହେଉଛି "ଶଙ୍କର" (ଶମ୍ +କର) ଶମ ହେଉଛି ଚିଦାନନ୍ଦ, ଅର୍ଥାତ୍ ଆତ୍ମାନନ୍ଦ। "କର"ମାନେ ଯେ ଶାଶ୍ୱତ ଶାନ୍ତି ବା ଚିର ଶାନ୍ତି ଦାନ କରନ୍ତି।

ଦିବ୍ୟତ୍ୱ, ପ୍ରତି ହୃଦୟରେ ଅନ୍ତର୍ନିହିତ। ଯେଉଁ ସ୍ଥାନରେ କରୁଣା ବ୍ୟାପ୍ତ ହୋଇ ରହିଥାଏ, ତାହା ହିଁ ହୃଦୟ। ତେଣୁ କରୁଣା ହେଉଛି ଦିବ୍ୟତ୍ୱର ସ୍ୱରୂପ। ପ୍ରତି ପ୍ରାଣୀ ବା ଜୀବଙ୍କର "ହୃଦୟ"ଥାଏ। ତେଣୁ ପ୍ରତି ପ୍ରାଣୀ ବା ଜୀବ ଦିବ୍ୟତ୍ୱର ମୂର୍ତ୍ତି। ସମସ୍ତେ ଦିବ୍ୟ ଏହା ହିଁ ସତ୍ୟ। କେହି ଉଚ୍ଚ ବା ନୀଚ ନୁହନ୍ତି। ସମସ୍ତେ ସମାନ, ସମସ୍ତେ ଦିବ୍ୟ। ଭଗବାନ କହିଛନ୍ତି -

**"ମମୈବାଂଶ ଜୀବଲୋକେ ଜୀବଭୂତ ସନାତନ।" (୧୫/୭ ଗୀତା)**

ଆଜିକାଲି ଲୋକେ ଈଶ୍ୱରତ୍ୱ ବା ଦେବତ୍ୱର ମୂଳତତ୍ତ୍ୱ ବା ମୌଳିକ ନୀତି ଜାଣିବା ପାଇଁ ସମର୍ଥ ନୁହନ୍ତି। ଉପାସନାର ଧାରା ଭିନ୍ନ ହେଉଥିଲେ ହେଁ ଏକ ଦେବତାଙ୍କର ବିଭିନ୍ନ ରୂପ ବା ମୂର୍ତ୍ତିକୁ ପୂଜା କରାଯାଇଥାଏ। ସେ ରାମ, କୃଷ୍ଣ ବା ଈଶ୍ୱର ଆଦି ହୁଅନ୍ତୁ, କିନ୍ତୁ ସମସ୍ତେ ଏକ। ପ୍ରତ୍ୟେକ ଲୋକ ନିଜ ନିଜର ରୁଚି ବା ଅଭିରୁଚି ଅନୁସାରେ ଠାକୁରଙ୍କର ଏକ ନିର୍ଦ୍ଦିଷ୍ଟ ରୂପ ବା ମୂର୍ତ୍ତିର ପୂଜା କରିଥାନ୍ତି। ଅନେକେ ରାମଙ୍କ ନାମରେ ଆକୃଷ୍ଟ ହୋଇଥାନ୍ତି। "ରମତେ ଇତି ରାମ"।

**"ରମତେ ସର୍ବଭୂତେଷୁ ସ୍ଥାବରେଷୁ ଚରେଷୁ ଚ**
**ଅନ୍ତରାତ୍ମା ସ୍ୱରୂପେଣ ଯଃ ସ ରାମେତି କଥ୍ୟତେ ॥"**

ଯେ ସମସ୍ତଙ୍କ ହୃଦୟରେ ରମଣ କରନ୍ତି ସେ ରାମ।

ପ୍ରତ୍ୟେକ ଲୋକଙ୍କ ଶ୍ୱାସ କ୍ରିୟାରେ ୨୧୦୦୦ ଥର "ସୋଽହଂ" ଧ୍ୱନି ଉଚ୍ଚାରିତ ହୋଇଥାଏ। ଏହାକୁ "ହଂସ ଗାୟତ୍ରୀ" କହନ୍ତି। "ହମ୍"ମାନେ ମୁଁ ଏବଂ "ସୋ" ମାନେ "ସେ", (ଈଶ୍ୱର)। ବହୁ ପୁରାଣ କାଳରୁ ଭାରତର ମୁନି ଋଷିମାନେ ସମଗ୍ର ବିଶ୍ୱକୁ ଏହି ଶିକ୍ଷା ଦେଇ ଆସିଛନ୍ତି୧

ଯେ କୌଣସି ଦୂର ପଦାର୍ଥକୁ ଆମେ ଆମର ବିଶି ଆଙ୍ଗୁଠି ଦେଖାଇ ଅନ୍ୟ ଲୋକକୁ ଦେଖାଇ ଦେଇଥାଉ। ସେହିପରି ମୂର୍ତ୍ତି ଆମକୁ ଈଶ୍ୱରତ୍ୱ ବା ଦେବତ୍ୱକୁ ଦେଖାଇ ଦେଇଥାଏ। ତେଣୁ ମୂର୍ତ୍ତିପୂଜା କେତେବେଳେ ନିନ୍ଦନୀୟ ହୋଇନପାରେ। କୌଣସି ମୂର୍ତ୍ତିକୁ ଜଡ଼ ବୋଲି ଅସମ୍ମାନ କରିବା ଉଚିତ୍ ନୁହେଁ। ତା'ନ ହୋଇଥିଲେ ପ୍ରସ୍ତର ଖମ୍ଭ ଭିତରୁ ଭଗବାନ ନରସିଂହ କଣ ଆବିର୍ଭାବ ହୋଇପାରିଥାନ୍ତେ।

**"ଅଣୋରଣୀୟାନ୍ ମହତୋ ମହୀୟାନ୍"**

ବ୍ରହ୍ମ ଅତ୍ୟନ୍ତ ସୂକ୍ଷ୍ମତମଠାରୁ ବି ଅଧିକ ସୂକ୍ଷ୍ମତର ଏବଂ ଅତ୍ୟନ୍ତ ବୃହତମ ଠାରୁ ବି ବୃହତର। ଏହି ଚୈତନ୍ୟ ଅତ୍ୟନ୍ତ ସୂକ୍ଷ୍ମତମ ପଦାର୍ଥଠାରୁ ଆରମ୍ଭ କରି ବୃହତମ ବସ୍ତୁ ଭିତରେ ବିଦ୍ୟମାନ। ତୁମ ଦୃଷ୍ଟିରେ ଯେ କୌଣସି ପଦାର୍ଥ ଜଡ଼ ଜଣା ପଡୁଥିଲେ ବି ବୈଦିକ ଦୃଷ୍ଟିରୁ ସବୁ ଚୈତନ୍ୟମୟ। ଯେ କୌଣସି ପଦାର୍ଥରେ ଚୈତନ୍ୟକୁ ଅବଜ୍ଞା କରିବା ମୂର୍ଖତା।

କେହି ପ୍ରଶ୍ନ କରିପାରନ୍ତି, ଚୈତନ୍ୟ ବା ଚେତନା ତ ସର୍ବବ୍ୟାପୀ; ତେବେ ମଣିଷ ଆଖିରେ କାହିଁକି ଜଣା ପଡ଼ିନଥାନ୍ତି। ଆମେ ସମସ୍ତେ ଜାଣୁ ପ୍ରତ୍ୟେକ ଦୁଧ ଠୋପା ବା ବିନ୍ଦୁରେ ଲହୁଣୀ ଭରି ରହିଥାଏ। ଖାଲି ଆଖିକୁ ଦେଖାଯାଉ ନାହିଁ ବୋଲି କଣ ଦୁଧରେ ଲହୁଣୀ ଥିବାକୁ ଆମେ ଅସ୍ୱୀକାର କରି ପାରିବା ? ତିନି ଚାରିଦିନ ଶିଝା ଦୁଧସରକୁ ଘସି ତହିଁରୁ ଉତ୍ପନ୍ନ ଦଧିକୁ ମନ୍ଥନ କଲେ ଲହୁଣୀ ବାହାରେ। ଏହି କ୍ରମରେ ଲହୁଣୀ ଆଦାୟ ନକଲେ ଖାଲି ଆଖିରେ ଲହୁଣୀ ଦେଖାଯିବ କେମିତି ?

ମଣିଷ ଦୁଇଟି ଦୋଷରୁ ଏହି ଚୈତନ୍ୟର ମୂଳ ତତ୍ତ୍ୱକୁ ଦେଖିବାକୁ ସମର୍ଥ ହୋଇପାରୁ ନାହିଁ।

୧. ମଣିଷ ପ୍ରଥମରେ ନିଜର ଅସୁମାରୀ ଭୁଲକୁ, ବିରାଡ଼ି ହଗି ମାଟି ମଡ଼ାଇ ଦେବା ପରି, ଆଖି ଆଡ଼େଇ ଦେଇ ଚାଲିଯାଉଛି।

୨. ଦ୍ୱିତୀୟରେ ଅନ୍ୟ ଲୋକର ନିହାତି ଛୋଟ ଛୋଟ ଭୁଲକୁ ଖୁବ୍ ବଡ଼ କରି ଦିନରାତି ଗାଇ ଚାଲିଛି।

ମଣିଷ ଯେତେବେଳେ ନିଜର ସମସ୍ତ ଗୋପନୀୟ ଅପରାଧକୁ ଅନ୍ୟମାନଙ୍କଠାରୁ ଲୁଚାଇ ରଖିବାକୁ ଏବଂ ଅନ୍ୟର ଛୋଟ ଛୋଟ ଭୁଲ ଭଟକାକୁ ଲୋକଙ୍କ ଆଗରେ ଦିନ ରାତି ବଡ଼ କରି କହି ବୁଲିବାକୁ ବନ୍ଦ କରିବ ସେତେବେଳେ ସେ ଦିବ୍ୟତ୍ୱ ପ୍ରାପ୍ତ ହୋଇଯିବ। ନିଜ ଭୁଲକୁ ନ ଅନାଇ ଅନ୍ୟ ଲୋକର ଭୁଲକୁ ଖୋଜି ବୁଲିବା ବଡ଼ ପାପ। ନିଜର ଛୋଟ ଛୋଟ ଭୁଲକୁ ଖୁବ୍ ବଡ଼ ବୋଲି ବିଚାର କର। ଏବଂ ସେଗୁଡ଼ିକ କ୍ରମେ ସଜାଡ଼ି ନେବା ପାଇଁ ଯତ୍ନ କର। ଯେତେ ବଡ଼ ହେଲେ ବି ପର ଦୋଷଗୁଡ଼ିକୁ ଆଦୌ ଦୃଷ୍ଟି ଦିଅ ନାହିଁ। ଅନ୍ୟକୁ ସମାଲୋଚନା କର ନାହିଁ। ବରଂ ନିଜକୁ ସମାଲୋଚନା କରି ପ୍ରଶ୍ନ କର, "ମଣିଷ ଜନ୍ମ ପାଇ ଏପରି ଜଘନ୍ୟ କର୍ମ କରିବା କ'ଣ ତୁମ ପକ୍ଷରେ ଶୋଭନୀୟ।"

ହେଲା, ନିଜର ପ୍ରତ୍ୟେକ ଭୁଲକୁ ବାହାରକୁ ଟାଣି ଆଣି ନିରନ୍ତର ସଂଶୋଧନ କରିବା ହିଁ ଦିବ୍ୟ ଜୀବନ। ଏହା ଫଳରେ ମନ୍ଦ ପ୍ରବୃତ୍ତି ସବୁ କ୍ରମେ ମଉଳି ଯାଏ ଏବଂ ଦିବ୍ୟଗୁଣ ସବୁ ଅଧିକ ଝଟକି ଉଠେ। ଏହା ହିଁ ହେଉଛି ସାଧନା।

"ସା" କହିଲେ ଦିବ୍ୟତ୍ୱକୁ ବୁଝାଏ ଏବଂ "ଧନ" ହେଉଛି, ପରମାର୍ଥ ଧନ। କିନ୍ତୁ ଆଜିକାଲି ସମାଜରେ ଯେ ଯେତେ ପରଦୋଷ ଦେଖେ ସେ ସେତେ ସେତେ ଉନ୍ନତି କରିଯାଏ। ଆଜି ସମାଜରେ ସବୁ ପ୍ରକାର ବିଶୃଙ୍ଖଳାର ଏହା ହିଁ କାରଣ।

ତେଣୁ ପରଦୋଷକୁ ନ ଅନାଇ ନିଜର ଦୋଷର ମୂଳୋତ୍ପାଟନ କରି "ଶିବତ୍ୱ" ପ୍ରାପ୍ତ ହେବା ଆମର ଏକମାତ୍ର ଲକ୍ଷ୍ୟ।

*(ବାବାଙ୍କର ୨୦୦୧ ଜାଗରର ଏକ*

*କ୍ଷୁଦ୍ର ପତ୍ରିକାରୁ ଗୃହୀତ)*

*ଭାଷାନ୍ତର : ବାଣୀଦତ୍ତ ଚମ୍ପତିରାୟ*

●

# ପରାଶର ସଂହିତାରେ
# ଶ୍ରୀ ହନୁମାନ୍

*ଡକ୍ଟର ଭି. ଭି. ବି. ରାମାରାଓ*

ପବିତ୍ର ରାମାୟଣ ଯେପରି ଶ୍ରୀରାମଙ୍କ ଅପୂର୍ବ ଗୁଣଗାଥାର ଏକ ଧାରାବାହିକ ସଂକଳନ, ଶ୍ରୀମଦ୍ ଭାଗବତମ୍ ଯେପରି ଶ୍ରୀକୃଷ୍ଣଙ୍କ ବୀରୋଚିତ କାର୍ଯ୍ୟାବଳିର ଏକ ଗ୍ରନ୍ଥ, ସେହିପରି 'ପରାଶର ସଂହିତା' ଭକ୍ତରାଜ ଶ୍ରୀହନୁମାନଜୀଙ୍କର ଅତ୍ୟନ୍ତ ଉଜ୍ଜ୍ୱଳମୟ ଗାରିମାର ଏକ ଅପୂର୍ବ ଅଭିଲେଖ। ଏହି ଧର୍ମଗ୍ରନ୍ଥଟିରେ ବିଶେଷ ଭାବରେ ଶ୍ରୀ ହନୁମାନ ତତ୍ତ୍ୱ ସ୍ଥାନ ପାଇଅଛି। ପରାଶର ଋଷି ମୈତ୍ରେୟଙ୍କୁ ଯାହା କହିଛନ୍ତି ତାହା ଅତି ଅମୋଘ ଓ ଅକାଟ୍ୟ।

ଦକ୍ଷିଣ ଭାରତର ପ୍ରସିଦ୍ଧ ସଙ୍ଗୀତ ସୁରକାର କବି ଆନନ୍ଦାଚାର୍ଯ୍ୟ, ହନୁମାନଙ୍କ ଉପରେ କିଛି ଲେଖିବା ପାଇଁ ସର୍ବ ପ୍ରଥମେ ବହୁଳ ଭାବରେ ପରାଶର ସଂହିତାର ସାହାଯ୍ୟ ନେଇଥିଲେ। ପ୍ରକୃତରେ ସିଏ ହିଁ 'ପରାଶର ସଂହିତା' ର ପ୍ରଥମ ଆବିଷ୍କାରକ। ବାନର ଆଞ୍ଜନେୟ କେବଳ ମାତ୍ର ନବମ ଅବତାରରେ ଶ୍ରୀହନୁମାନ।

ମହାବୀର ହନୁମାନଙ୍କ ମହନୀୟ କାହାଣୀ, ତାଙ୍କର ସବୁ ଅବତାରର କଥା, ଅସୁମାରୀ ମନ୍ତ୍ର ଧର୍ମାନୁଚରଣର ପଦ୍ଧତି ଓ ପୂଜାଭ୍ୟାସାଦି ସାଧକମାନଙ୍କ ପାଇଁ 'ପରାଶର ସଂହିତା'ରେ ବହୁଳ ଭାବରେ ଗଚ୍ଛିତ ହୋଇ ରହିଅଛି। ବହୁ ବାଦ ବିବାଦର ସମାଧାନ କରି ପରାଶର ସଂହିତା କେତେଗୁଡ଼ିଏ ଯୁକ୍ତିର ଅକାଟ୍ୟ ସିଦ୍ଧତା ପ୍ରମାଣ କରି ପାରିଅଛି। ଯେପରିକି ହନୁମାନଙ୍କ ଜନ୍ମ ବିଷୟରେ "ପରାଶର ସଂହିତା" ଅକାଟ୍ୟ ଯୁକ୍ତି ସହ କହେ - ହନୁମାନ ବୈଶାଖ ପୂର୍ଣ୍ଣିମା ପର ଦଶମ ଦିବସର ଶନିବାର ପୂର୍ବାଭାଦ୍ର ବୈଧୃତି ଯୋଗ (କରକ ଲଗ୍ନ) ଅପରାହ୍ନରେ ଜନ୍ମଗ୍ରହଣ କରିଥିଲେ।

ଧାର୍ମିକଲୋକଙ୍କୁ ରକ୍ଷା କରିବା ପାଇଁ ଓ ଖଳ ଅଧର୍ମୀଙ୍କୁ ଶାସ୍ତି ଦେବା ପାଇଁ ସର୍ବଶକ୍ତିମାନ ପରମେଶ୍ୱର ଧରାଧାମରେ ଅବତୀର୍ଣ୍ଣ ହୋଇଥାନ୍ତି। 'ପରାଶର ସଂହିତା'ରୁ ଜଣାପଡ଼େ ହନୁମାନ ନଅଟି ଅବତାର ଗ୍ରହଣ କରିଥିଲେ। ଆନ୍ଧ୍ର ପ୍ରଦେଶର ଡକ୍ଟର

ଅନ୍ନଦାନମ୍ ଚିଦାମ୍ବର ଶାସ୍ତ୍ରୀ 'ପରାଶର ସଂହିତା'ର ଶ୍ରୀ ଆଞ୍ଜନେୟ ଚରିତ୍ର ପ୍ରକାଶ କରିଛନ୍ତି। ପନ୍ଦରଗୋଟି ଯୋଜନାବଦ୍ଧ ଗ୍ରନ୍ଥ ଭିତରୁ ଏ ଯାବତ୍ ତେରଗୋଟି ପ୍ରକାଶ ପାଇ ସାରିଛି। "ହନୁମତ୍ ନବାବତାର ଚରିତ୍ର" ନାମକ ଆଉ ଏକ ପୁସ୍ତକ ମଧ୍ୟ ସେ ଲେଖି ଅଛନ୍ତି।

## ହନୁମତ୍ ନବାବତାର : -

ହନୁମାନଙ୍କର ନବ ଅବତାର ଭିତରୁ ପ୍ରଥମଟି ହେଉଛି, "ପ୍ରସନ୍ନାଞ୍ଜନେୟ"। ଦ୍ୱିତୀୟଟି , "ବୀରାଞ୍ଜନେୟ"। ଏହି ଦୁଇଟି ଯାକ ଅବତାର ସାଧାରଣ ଲୋକଙ୍କ ପାଖରେ ଅତିପ୍ରିୟ। ତୃତୀୟ ଅବତାର ହେଉଛି "ବିଂଶତିଭୁଜାଞ୍ଜନେୟ"। ଏହି ଅବତାରରେ ହନୁମାନଙ୍କର କୋଡ଼ିଏଟି ବାହୁରେ କୋଡ଼ିଏଟି ଅସ୍ତ୍ର ରହିଅଛି। ଚତୁର୍ଥ ଅବତାର ହେଉଛି "ପଞ୍ଚମୁଖାଞ୍ଜନେୟ"। ଏହି ମୂର୍ତ୍ତିରେ ହନୁମାନଙ୍କର ପାଞ୍ଚମୁଖ ଚାରିପଟରେ ଚାରିମୁଖ ଓ ପଞ୍ଚମଟି ଉର୍ଦ୍ଧ୍ୱମୁଖ। ଅଠରମୁଖ ବିଶିଷ୍ଟ ହନୁମାନ ମୂର୍ତ୍ତି ହେଉଛି ତାଙ୍କର ପଞ୍ଚମ ଅବତାର ହନୁମାନ, ବ୍ରହ୍ମଚାରୀ ହେଲେ ମଧ୍ୟ ଷଷ୍ଠ ଅବତାରରେ ତାଙ୍କୁ ଗୃହସ୍ଥ ବୋଲି ବର୍ଣ୍ଣନା କରାଯାଇଅଛି। ଏଠାରେ ମହର୍ଷି ବାଲ୍ମିକୀ ସମ୍ପୂର୍ଣ୍ଣ ନୀରବତା ଅବଲମ୍ବନ କରି ଯାଇଛନ୍ତି। ଖଗେନ୍ଦ୍ର ସଂହିତା, ଶୌନକ ସଂହିତା, ସୁଦର୍ଶନ ସଂହିତାଦିରେ ହନୁମାନଙ୍କର ବିବାହ ସମ୍ପର୍କୀୟ କଥା ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଅଛି।

ଚାରିସ୍କନ୍ଧ ବିଶିଷ୍ଟ ହନୁମାନ ହେଉଛନ୍ତି ସପ୍ତମ ଅବତାର। ଅଷ୍ଟମ ଅବତାରରେ ହନୁମାନ ଅତ୍ୟନ୍ତ ଉଗ୍ର କରାଳ ମୂର୍ତ୍ତି ଧାରଣ କରିଛନ୍ତି। ବତିଶ ସ୍କନ୍ଧରେ ବତିଶ ଅସ୍ତ୍ର ରହିଛି। ପରାଶର ସଂହିତା ଏହାକୁ "ହୁଂକାର ହନୁମତ୍ ମନ୍ତ୍ରର ମୂର୍ତ୍ତି" ବୋଲି ବର୍ଣ୍ଣନା କରିଛନ୍ତି। ନବମରେ ମର୍କଟ ରୂପଧାରୀ ଆଞ୍ଜନେୟ ଦେବୀ ସୀତାଙ୍କ ନିକଟକୁ ଶ୍ରୀରାମଙ୍କ ଦୂତ ଅଟନ୍ତି।

ହନୁମାନଙ୍କର କେଉଁ କାରଣରୁ କେଉଁ ସମୟରେ କେଉଁରୂପ ହୋଇଥିଲା, ତାହାର ବିସ୍ତୃତ ବର୍ଣ୍ଣନା ଷାଠିଏତମ ପଟଳରେ ରହିଅଛି। ହନୁମାନଙ୍କର ଏକାଦଶ ପୀଠ କଥା ମଧ୍ୟ ଋଷି ପରାଶର କହିଛନ୍ତି।

ହନୁମାନଙ୍କର ସହସ୍ର ନାମ କଥା ଓ ପ୍ରତ୍ୟେକ ନାମର ବୈଧତା ସମ୍ପର୍କରେ ପରାଶର ସଂହିତାରେ ବିଶେଷ ଭାବରେ ଉଲ୍ଲେଖ କରାଯାଇଛି।

ଏହି ସଂହିତାରେ ହନୁମାନ ଭବିଷ୍ୟତ ବ୍ରହ୍ମା ହେବେ ବୋଲି କୁହାଯାଇଛି। "ଓଁ ଭବିଷ୍ୟତ ଚତୁରାନନାୟ ନମଃ" ହନୁମାନଙ୍କର ଅଷ୍ଟଶତ ନାମରେ ଉଲ୍ଲେଖ ଅଛି। ରାମାୟଣରେ ଏ ବିଷୟରେ କେଉଁଠି କିଛି ସୂଚନା ନାହିଁ। ୪୬ ତମ ପଟଳରେ ଋଷି ପରାଶର ଭବିଷ୍ୟତ ବ୍ରହ୍ମାଙ୍କ ବିଷୟରେ ବିସ୍ତୃତ ଆଲୋଚନା କରିଛନ୍ତି। ଶ୍ରୀରାମଙ୍କ ମୁଦ୍ରିକା ପାଇଁ ହନୁମାନ ବ୍ରହ୍ମଲୋକ ଯାଏଁ ଚାଲି ଯାଇଛନ୍ତି ଓ ସେଠାରେ ସେ ବିଶ୍ୱରୂପ ଦେଖାଇ ଶ୍ରୀରାମଙ୍କ ଇଛା ପୂରଣ କରିଛନ୍ତି। ଏ ବର ବ୍ରହ୍ମାଙ୍କର।

ହନୁମାନ ଏକ ଅନୁପମ ଅଦ୍ୱିତୀୟ ଦେବତା। ଶୈବ ଏବଂ ବୈଷ୍ଣବମାନେ ହନୁମାନଙ୍କର ପୂଜା କରନ୍ତି। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ହନୁମାନଙ୍କର ପୂଜା କରିବାକୁ ସମସ୍ତଙ୍କର ପ୍ରବେଶ ପଥ ଅତି ସହଜ ଓ ସୁଗମ। ଏଥିପାଇଁ କେବଳ ଅତୀବ ବିଶ୍ୱାସ ଓ ଭକ୍ତି ଆବଶ୍ୟକ।

'ପରାଶର ସଂହିତା'ରେ ହନୁମାନଙ୍କର ଅତି କ୍ଷୁଦ୍ରଠାରୁ ଆରମ୍ଭ କରି ଅତି ବୃହତ୍ ଗୌରବ ଗାରିମା ସବୁ ସ୍ଥାନ ପାଇଅଛି। ସହଜେ ତ ହନୁମାନ ନିଜକୁ କ୍ଷୁଦ୍ରରୁ ଅତି କ୍ଷୁଦ୍ର କରିପାରନ୍ତି ଏବଂ ସେହିପରି ଅତ୍ୟନ୍ତ ବିଶାଳକାୟ ମଧ ହୋଇଥାନ୍ତି। ସେ ଅର୍ଜୁନଙ୍କ ରଥରେ କପିଧ୍ୱଜ ହୋଇ ଭଗବାନ ଶ୍ରୀକୃଷ୍ଣଙ୍କ ମୁଖାମୃତ 'ଗୀତା' ରସ ପାନ କରିବାର ସୌଭାଗ୍ୟ ଲାଭ କରିଛନ୍ତି। କଳ୍ପତରୁ କାମଧେନୁ ଓ ଚିନ୍ତାମଣି ପରି ହନୁମାନ ଭକ୍ତଙ୍କୁ ସବୁ ଦିଅନ୍ତି ଓ ଭକ୍ତର ସକଳ କାମନା ପୂର୍ଣ୍ଣ କରନ୍ତି। ଅନେକ ପ୍ରମାଣ ଓ ଦୃଷ୍ଟାନ୍ତ ସବୁକୁ ଉଦ୍ଧାର କରି ଋଷି ପରାଶର କହନ୍ତି –

**"ହେ ଜଗତବାସୀ, ଜଗତକୁ ଦେଖି ଭୀତ ଓ ବ୍ୟସ୍ତ ହେବାର କାରଣ କଣ ? ହନୁମାନ ତ ଅଛନ୍ତି, ସେ ସକଳ ଦୁଃଖହାରୀ ଓ ଭବଭୟହାରୀ। ଭକ୍ତ ଯାହା ଚାହେଁ ଓ କାମନା କରେ, ସେ ତ ସବୁର ଦାତା।"**



# ରାମଭକ୍ତ
# ଶ୍ରୀ ହନୁମାନ

*୰ ଶ୍ରୀମତ୍  ସ୍ୱାମୀ ହରିଚରଣ ଦାସ ମହାରାଜ*

ଯୁଗେ ଯୁଗେ ସନ୍ଥମାନଙ୍କର ରକ୍ଷା, ଅସତ୍‌ର ବିନାଶ ଓ ସର୍ବୋପରି ଧର୍ମ ସଂସ୍ଥାପନାର୍ଥେ ପରାତ୍ପର ବ୍ରହ୍ମ ସତ୍-ଚିତ୍-ଆନନ୍ଦ ସ୍ୱରୂପ ସର୍ବବ୍ୟାପକ, ଅଖିଳ ବ୍ରହ୍ମାଣ୍ଡ ନାୟକ ପ୍ରଭୁ ଅବତାର ଗ୍ରହଣ କରିଥାନ୍ତି। ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ରାମ, କୃଷ୍ଣ ଆଦି ବହୁ ଅବତାରଙ୍କ ଭିତରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ମଧ୍ୟ ମୁଖ୍ୟ ଅବତାର ରୂପେ ପ୍ରତିଷ୍ଠିତ।

ସେହି ଅବତାରୀ ପ୍ରଭୁଙ୍କ ସେବାରେ ସମସ୍ତ ଦେବଗଣ ବିଭିନ୍ନ ରୂପ ଧାରଣ କରି ମର୍ତ୍ତ୍ୟରେ ଅବତରଣ କରିଥାନ୍ତି। ଶ୍ରୀରାମଙ୍କ ଅବତାର ସମୟରେ ଏକାଦଶ ରୁଦ୍ର ସ୍ୱରୂପ, ଭୂତ-ଭାବନ ଶ୍ରୀଶଙ୍କର ସ୍ୱୟଂ ହନୁମାନଜୀଙ୍କ ରୂପରେ ମର୍ତ୍ତ୍ୟକୁ ଅବତରଣ କରିଥିଲେ।

"ରୁଦ୍ର ଦେହ ତେଜି ନେହବସ
ବାନରଭୈ ହନୁମାନ।"

ରାମଚନ୍ଦ୍ରଙ୍କ ନିତ୍ୟ ଦାସ ରୂପରେ ଶ୍ରୀହନୁମାନଜୀଙ୍କର ସେବା, ନିଷ୍ଠା, ପ୍ରଭୁଭକ୍ତି, ଉପାସନା ଏବଂ ରାମଭକ୍ତଙ୍କ ରକ୍ଷା ଆଦି ସୁନ୍ଦର ଚରିତ ଶ୍ରୀରାମାୟଣ, ମହାଭାରତ ବେଦ ସଂହିତାରେ ବର୍ଣ୍ଣିତ ହୋଇଅଛି। ଋଗ୍‌ବେଦରେ ଶ୍ରୀହନୁମାନଜୀଙ୍କ ଜନ୍ମ ପରେ ସୂର୍ଯ୍ୟଙ୍କୁ ଗ୍ରାସ କରିବା ପାଇଁ ଚେଷ୍ଟା କଲାବେଳେ ଇନ୍ଦ୍ରଙ୍କ ଦ୍ୱାରା ହନୁ ଉପରେ ବଜ୍ର ପ୍ରହାରରେ ହନୁମାନ ନାମକରଣ ପ୍ରସଙ୍ଗ ଉଲ୍ଲେଖ ଅଛି।

ସତ୍ୟ ତ୍ରେତା ଦ୍ୱାପର ଓ କଳି ଏହି ଚାରିଯୁଗରେ ହନୁମାନଜୀ ପ୍ରତ୍ୟକ୍ଷ ଥାଇ ଅବତାରମାନଙ୍କର ସେବା ଓ ଜଗତରେ ଆଦର୍ଶ ଚରିତ୍ର ଦେଖାଇ ଅଛନ୍ତି।

ସେ ସ୍ୱୟଂ ଅଣିମା ଲଘିମା ଆଦି ଅଷ୍ଟସିଦ୍ଧି ପ୍ରଦାତା ହେଲେ ହେଁ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଅବତାର ବେଳେ ଶ୍ରୀହନୁମାନଜୀଙ୍କ ଦାସ୍ୟ ଭାବ ଓ ନମ୍ରତା ପ୍ରଭୃତି ଭକ୍ତସୁଲଭ ଗୁଣର ଚରମ ଉତ୍କର୍ଷତା ଦେଖିବାକୁ ମିଳେ। ସୀତା ଅନ୍ୱେଷଣାର୍ଥେ ଲଙ୍କାପୁରରେ ପ୍ରବେଶ କରି ସୀତା ମହାରାଣୀଙ୍କ ଆଗରେ ନିଜର ପରିଚୟ ଦେବା ସମୟରେ ସେ ବିନମ୍ର ଭାବରେ କହିଛନ୍ତି।

ଅହଙ୍କାରୀ ଦୁର୍ଦ୍ଧାନ୍ତ ପ୍ରବଳ ପରାକ୍ରମୀ ରାବଣ ଶ୍ରୀହନୁମାନଜୀଙ୍କର ପ୍ରତିଭା ଶୌର୍ଯ୍ୟ, ଅମିତ ଶକ୍ତି ବୁଝିପାରି ନିଜର ସେନାପତିମାନଙ୍କୁ କହିଛନ୍ତି ଯେ -

"ଏହି ପରାକ୍ରମୀ ଅଦ୍ଭୁତ ବାନରକୁ ମୁଁ ସାଧାରଣ ବାନର ରୂପେ ଗ୍ରହଣ କରିପାରିବି ନାହିଁ। ବାଳୀ, ସୁଗ୍ରୀବ ତଥା ଅନ୍ୟାନ୍ୟ ବାନରମାନଙ୍କର ଗତି ତେଜ ବଳ ଦେଖିଛି। କିନ୍ତୁ ଏ ହନୁମାନ, ବାନର ରୂପରେ ନିଶ୍ଚୟ ଅଲୌକିକ ପୌରୁଷ ସମ୍ପନ୍ନ ମହାନ ଶକ୍ତି। ଏ ସମ୍ପର୍କରେ ମୁଁ ନିଃସନ୍ଦେହ।"

"ରାମ ରହସ୍ୟ ଉପନିଷଦ୍"ରେ ଶ୍ରୀହନୁମାନଙ୍କୁ ବ୍ରହ୍ମଜ୍ଞାନୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଜ୍ଞାନୀ ବୋଲି ପ୍ରମାଣ କରାଯାଇଛି। ସନକ, ପ୍ରହ୍ଲାଦ, ଯୋଗୀବୃନ୍ଦ, ଋଷିଗଣଙ୍କ ମଧ୍ୟରେ ମହାବଳଶାଳୀ ଶ୍ରୀ ହନୁମାନଜୀ ଶ୍ରେଷ୍ଠ ଜ୍ଞାନୀ।

ପୁନଶ୍ଚ ଗୋସ୍ୱାମୀ ତୁଳସୀ ଦାସ 'ଶ୍ରୀ ରାମଚରିତ ମାନସ'ରେ ଅତୁଳ ବଳଶାଳୀ, ସୁବର୍ଣ୍ଣକାନ୍ତି ଯୁକ୍ତ, ରାକ୍ଷସ ନିଧନ କର୍ତ୍ତା, ସର୍ବଗୁଣ ସମ୍ପନ୍ନ ରାମଚନ୍ଦ୍ରଙ୍କ ପ୍ରିୟଭକ୍ତ ବାନର ଶ୍ରେଷ୍ଠ ହନୁମାନଜୀଙ୍କୁ ସମସ୍ତ ଜ୍ଞାନୀମାନଙ୍କର ଅଗ୍ରଗଣ୍ୟ ବୋଲି ପ୍ରତିପାଦନ କରିଛନ୍ତି।

*ଚିତ୍ରକୁଟ ଆଶ୍ରମ, ଭୁବନେଶ୍ୱର*



## ଦେବତା କୋଟିର
## ଅଞ୍ଜନୀ ସୁତ କେଶରୀ ନନ୍ଦନ - ଶ୍ରୀ ହନୁମାନ

ମୀନ, ବରାହ, କଚ୍ଛପ, ନରସିଂହାଦି ପରମାତ୍ମାଙ୍କ ଅବତାର ଅଟନ୍ତି। ସେହିପରି ବିଶ୍ୱର ସମସ୍ତ ପ୍ରାଣୀ ପରମାତ୍ମା ଅଂଶୀ କୃଷ୍ଣରୂପ ପରମେଶ୍ୱରଙ୍କର ଅବତାର ଅଟନ୍ତି। ଅଂଶ ବା କଳାର ନ୍ୟୁନାଧିକ ଅନୁପାତ ଅନୁସାରେ ସେ ସମସ୍ତ ଜୀବ ବା ପ୍ରାଣୀ ମାନବ ଦାନବ ଦେବତାଦି କୋଟିରେ ବିଭାଜିତ ହୋଇଥାଆନ୍ତି। ଏହି ଅନୁକ୍ରମରେ ଯେ ଲୋକୋତ୍ତର ଶକ୍ତି ସମ୍ପନ୍ନ ହୋଇ ପାରିଥାନ୍ତି ତାଙ୍କୁ ଆମେ ଦେବତା ଈଶ୍ୱର ଚନ୍ଦ୍ର ସୂର୍ଯ୍ୟ ବରୁଣାଦି ରୂପରେ ଅଭିହିତ କରିଥାଉଁ। ଏହି ରୀତିରେ ଅଞ୍ଜନୀ ସୁତ ମାରୁତି ନନ୍ଦନ ଶ୍ରୀ ହନୁମାନ ଦେବତା କୋଟିର ଅଟନ୍ତି। ଆଉ ଯେଉଁମାନେ କେବଳ ଲୌକିକ ବଳ ବୁଦ୍ଧି ସମ୍ପନ୍ନ ହୋଇଥାନ୍ତି ସେମାନେ ମନୁଷ୍ୟ ଆଦି ଜାଗତିକ ପ୍ରାଣୀ ରୂପେ ଅଭିହିତ ହୁଅନ୍ତି।

ତତ୍ତ୍ୱତଃ ସମ୍ପୂର୍ଣ୍ଣ ସୃଷ୍ଟିରେ ପରଂବ୍ରହ୍ମ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କାହାରି ଅସ୍ତିତ୍ୱ ନାହିଁ। ସ୍ଥାବର ଜଙ୍ଗମ ରୂପରେ ଯାହା କିଛି ବି ରୂପ ଦୃଷ୍ଟିଗୋଚର ହୁଏ, ଏ ସମସ୍ତ ବ୍ରହ୍ମଙ୍କ ପ୍ରତୀକ ଅଟନ୍ତି। ବିଶ୍ୱର ସକଳ ବିକାଶ ଏହି ବ୍ରହ୍ମଙ୍କ ଲୀଳା ବିଳାସ ମାତ୍ର। ତାଙ୍କୁ ଛାଡ଼ି ସୃଷ୍ଟିରେ ଆଉ କିଛି ନାହିଁ। ଛାନ୍ଦୋଗ୍ୟ ଉପନିଷଦରେ ୩.୧୪.୧ ରେ "ସର୍ବ ଖଲ୍ୱିଦଂ ବ୍ରହ୍ମ", "ଜୀବୋ ବ୍ରହ୍ମୈବ ନାପରଃ" - ଏହି ଏକ କଥା ବିଭିନ୍ନ ସ୍ଥାନରେ ଉଲ୍ଲେଖ ହୋଇଅଛି।

ଏହି ଏକ ଅବ୍ୟୟ ସନାତନ ତତ୍ତ୍ୱକୁ ପଣ୍ଡିତମାନେ ରୁଦ୍ର, ବରୁଣ ବାୟୁ ଆଦି ଭିନ୍ନ ଭିନ୍ନ ନାମରେ ସମ୍ବୋଧିତ କରିଛନ୍ତି। କିନ୍ତୁ ବାସ୍ତବରେ ସେ ପରମ ତତ୍ତ୍ୱରେ କିଛି ଅନେକତା ନାହିଁ। "ଏକ ସଦ୍ ବିପ୍ରା ବହୁଧା ବଦନ୍ତି।" ଋଗ୍‌ବେଦ ୧.୧୬୪.୪୬

କଳ୍ପର ଆରମ୍ଭରେ ଯେବେ ଏହି ପରମ "ଚୈତନ୍ୟ ତତ୍ତ୍ୱ" ନିଜକୁ ଏକାନ୍ତ ଏକୁଟିଆ ଦେଖିଲେ ଏବଂ ଗଭୀର ଭାବରେ ଅନୁଭବ କଲେ ଏକାକୀତ୍ୱର ବେଦନା, ତେବେ ସୃଷ୍ଟିପାଇଁ ତାଙ୍କର ସଂକଳ୍ପୋଦୟ ହେଲା। ପୁଣି ମନେ ମନେ ସେ କାମନା କଲେ "ମୁଁ ତ ଏକ, ମୁଁ ନିଜେ ବହୁତ ହୋଇଯିବି, ପ୍ରଜା ସୃଷ୍ଟି କରିବି। (୧) ତେବେ ସେ ନିଜେ ବହୁ ରୂପ ହୋଇଗଲେ ଏବଂ ସୃଷ୍ଟି କ୍ରମ ଚାଲିଲା। "ତଦେକ୍ଷତ୍ ବହୁସ୍ୟାଂ ପ୍ରଜାୟେୟେତି"। ଛାନ୍ଦୋଗ୍ୟ -୬.୨.୬

(୨) "ତଦାତ୍ମାନଂ ସ୍ୱୟମ୍ କୁରୁତ"। ତୈତିରୀୟ ଉପନିଷଦ - ୨.୭.୧

ଏଠାରେ ଏବେ ପ୍ରଶ୍ନ ଉଠୁଛି, ସେହି ସର୍ବଶକ୍ତିମାନଙ୍କର କେଉଁ କଥା ପାଇଁ କାମନା ହେଲା ? ଅଭାବୀ ଲୋକର ସିନା କାମନା ହେବ ! ତେବେ ସର୍ବଶକ୍ତିମାନ ସର୍ବନିୟନ୍ତାଙ୍କର କାହିଁକି କାମନା ହେବ ? ଏହା ଜଗତ୍‌ବାସୀଙ୍କ ପାଇଁ ନିଶ୍ଚୟ ତର୍କର ବିଷୟ। କିନ୍ତୁ ପରମାତ୍ମ ତତ୍ତ୍ୱ ମାନବ ବୁଦ୍ଧିର ବହୁତ ଉର୍ଦ୍ଧ୍ୱରେ। ବ୍ରହ୍ମଙ୍କର ସନାତନ ସ୍ୱରୂପ ନିର୍ଦ୍ଧାରଣ ପାଇଁ ବେଦ କହେ - "ଯେ ଅମୃତ୍ ସ୍ୱରୂପ" ମୃତ୍ୟୁ ଆଦି ପରିବର୍ତ୍ତନ ବିକାର ରହିତ। ନିତ୍ୟ ସତ୍ୟ ପରମାନନ୍ଦ ଘନ। ବ୍ରହ୍ମ ହିଁ କେବଳ ସମସ୍ତ ସୃଷ୍ଟିରେ ଆପଣା ଲୀଳାଭିନୟ କରୁଛନ୍ତି। ଆମ ଆଗରେ, ଆମ ପଛରେ ଆମ ଡାହାଣରେ ଆମ ବାଁ ପଟେ, ଉପରେ ଓ ତଳେ ସର୍ବତ୍ର ପ୍ରସାରିତ ହୋଇ ଭିନ୍ନ ଭିନ୍ନ ରୂପରେ ନିଜର ଅସ୍ତିତ୍ୱ ବା ରୂପ ଧାରଣ କରୁଅଛନ୍ତି। ବିଶ୍ୱର ପ୍ରକୃତ ରୂପ ହେଉଛନ୍ତି ବ୍ରହ୍ମ। ତେଣୁ କେବଳ ବିଶ୍ୱ ହେଉଛି ଆମର ଏକମାତ୍ର ଆରାଧନାର ସାଧନା କେନ୍ଦ୍ର। ଦୃଷ୍ଟିଗୋଚର ହେଉଥିବା ସମସ୍ତ ଚରାଚର ପ୍ରାଣୀ ଓ ପଦାର୍ଥକୁ ବ୍ରହ୍ମମୟ ବୋଲି ବିଚାର କରିବା ଉଚିତ୍ ଏବଂ ତୀବ୍ର ଭାବରେ ଅନୁଭବ କରିବା ବିଧେୟ। ମୁଣ୍ଡକୋପନିଷଦ କହେ - "ବ୍ରହ୍ମୈବେଦମମୃତଂ ପୁରସ୍ତାଦ ବ୍ରହ୍ମ ପଶ୍ଚାତ, ବ୍ରହ୍ମ ଦକ୍ଷିଣତଶ୍ଚୋତ୍ତରେଣ।"

ଅଧଶ୍ଚୋର୍ଦ୍ଧ୍ୱତଂ ପ୍ରସୃତଂ ବ୍ରହ୍ମୈବେଦଂ ବିଶ୍ୱମିଦଂ ବରିଷ୍ଠମ୍।" ୨.୧.୧୧

ଯେଉଁଠାରୁ ଏହି ଦୃଶ୍ୟମାନ ଚରାଚର ପ୍ରାଣୀ ଉତ୍ପନ୍ନ ହୋଇଥାନ୍ତି, ଉତ୍ପନ୍ନ ହୋଇସାରି ଯାହାର ଆଶ୍ରୟରେ ଜୀବନ ଧାରଣ କରିଥାନ୍ତି ଏବଂ ଯାହାଠାରେ ସମାବିଷ୍ଟ ହୋଇଥାନ୍ତି ସେହି କେବଳ ହିଁ ବ୍ରହ୍ମ ପଦବାଚ୍ୟ।

**ଯତୋ ବା ଇମାନି ଭୂତାନି ଜାୟନ୍ତେ**
**ଯେନ ଯାତାନି ଜୀବନ୍ତି ।**
**ଯତ୍ ପ୍ରୟନ୍ତାଭିସଂବିଶନ୍ତି**
**ତତ୍‌ବିଜ୍ଞାସସ୍ୱ । ତଦ୍ ବ୍ରହ୍ମେତି ।**

*ତୈତିରୀୟ ଉପନିଷଦ୍ ୩. ୧. ୧*

ବାସୁଦେବ ଶ୍ରୀକୃଷ୍ଣ ସମ୍ପୂର୍ଣ୍ଣ କଳାରେ ପରିପୂର୍ଣ୍ଣ ହୋଇ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ ।

**"ଏତେ ଚାଂଶକଳାଃ ପୁଂସ, କୃଷ୍ଣସ୍ତୁ ଭଗବାନ ସ୍ୱୟଂ ।"**

*ଶ୍ରୀମଦ୍ ଭାଗବତମ୍ ୧. ୧୩. ୨୮*

ସେହି ପ୍ରଭୁ ଶ୍ରୀକୃଷ୍ଣ ଘୋଷଣା କରୁଛନ୍ତି ଯେ - ଜୀବ ଦେହରେ ସନାତନ ବିଶ୍ୱାତ୍ମା କେବଳ ମୋର ଅଂଶ ମାତ୍ର । କିନ୍ତୁ ପ୍ରକୃତି ସ୍ଥିତ ହୋଇ ସେ ମନ ତଥା ତ୍ୱକ, ରସନା, ଚକ୍ଷୁ, କର୍ଣ୍ଣ ଓ ନାସିକା ଏହି ପାଞ୍ଚ ଇନ୍ଦ୍ରିୟକୁ ଆକର୍ଷିତ କରିଥାଏ । ଅର୍ଥାତ୍ ଜୀବାତ୍ମା ପରମାତ୍ମାଙ୍କର ଅଂଶ । କିନ୍ତୁ ମାୟାବଶ ହୋଇ ଷଷ୍ଠେନ୍ଦ୍ରିୟ ମନ ସାଥିରେ ତ୍ୱକ୍ ଆଦି ପଞ୍ଚେନ୍ଦ୍ରିୟଙ୍କୁ ଆକର୍ଷିତ କରିଥାଏ ଏବଂ ଲିଙ୍ଗ ଶରୀର ଧାରଣ କରି ସଂସାର ଭିତରକୁ ଗମନାଗମନ କରିଥାଏ ।

**"ମମୈବାଂଶୋ ଜୀବଲୋକେ ଜୀବଭୂତ ସନାତନ,**
**ମନଃ ଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି ।।** *ଗୀତା ୧୫/୭*

ବୈଦିକ ପ୍ରତିପାଦନ ଅନୁସାରେ ଭଗବାନ ଭିନ୍ନ ଭିନ୍ନ ରୂପର ଅସ୍ତିତ୍ୱ ଧାରଣ କରିଥିବା ପରି ମନେ ହୁଏ ।

**"ରୂପଂ ରୂପଂ ପ୍ରତିରୂପୋ ବଭୁବ**
**ତଦସ୍ୟ ରୂପଂ ପ୍ରତିଚକ୍ଷକଣାୟ ।"** *ଋଗ୍‌ବେଦ ୨. ୪୩. ୧୮*

"ଅଗ୍ନିର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ,

ରୂପଂ ରୂପଂ ପ୍ରତିରୂପୋ ବଭୁବ ।

ଏକ ସ୍ତଥା ସର୍ବଭୂତାନ୍ତରାତ୍ମା

ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ।।୯ ।।

*ଦ୍ୱିତୀୟ ଅଧ୍ୟାୟ-ଦ୍ୱିତୀୟ ବଲ୍ଲୀ, କଠୋପନିଷଦ,*

ଯେବେ ଆଦିଦେବ ନାରାୟଣ ନିଜ ଦ୍ୱାରା ନିର୍ମିତ ହୋଇଥିବା ପଞ୍ଚଭୂତର ସହାୟତାରେ ବ୍ରହ୍ମାଣ୍ଡ ରୂପୀ ଦେହ ବା ପିଣ୍ଡ ବ୍ରହ୍ମାଣ୍ଡ ଗଠନ କରି ତନ୍ମଧ୍ୟରେ ନିଜ ଅଂଶରେ ପ୍ରବେଶ କଲେ ତେବେ ସେ ବି ପୁରୁଷ ନାମଧାରୀ ହୋଇଗଲେ ।

ଭଗବାନ ଶ୍ରୀକୃଷ୍ଣ ପୁଣି କହିଛନ୍ତି - "ହେ ଧନଞ୍ଜୟ, ମୋ ଠାରୁ ଭିନ୍ନ ଅନ୍ୟ କିଛି ବି ପରମ କାରଣ ନାହିଁ । ଏହି ସମଗ୍ର ଜଗତ ସୂତାରେ ଗୁନ୍ଥା ହୋଇଥିବା ମଣି ସବୁ ପରି ମୋ ଠାରେ ହିଁ କେବଳ ଗୁନ୍ଥା ହୋଇ ରହିଛି ।

"ମତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ ।

ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣା ଇବ ।" *ଗୀତା ୩/୩*

ଏହି ସବୁ ବିଷୟ ଜାଣିଗଲେ ମଣିଷ ଜନ୍ମ-ମୃତ୍ୟୁମୟ ଭବ ପାରାବାରରୁ ସହଜରେ ମୁକ୍ତ ହୁଏ ।

**ଭବବାନଙ୍କର ଅବତାରବାଦ :**

ସତ୍ତ୍ୱଗୁଣ ସମ୍ପନ୍ନ ପରମାତ୍ମାଙ୍କର ଅବତାରର କୌଣସି ସଂଖ୍ୟା ନାହିଁ । ଏହା ସଂଖ୍ୟାତୀତ ।

"ଅବତାରା ହ୍ୟସଂଖ୍ୟେୟା ହରେଃ ସତ୍ତ୍ୱନିଧେର୍ଦ୍ୱିଜାଃ ।"

*ଶ୍ରୀମଦ୍ ଭାଗବତମ୍ ୧/୩/୨୬*

ଏବେ ନିବନ୍ଧ ପ୍ରତିପାଦ୍ୟ ପବନତନୟ ଶ୍ରୀହନୁମାନଜୀ ନିଜର ମନୋଜବତା, ଅଖଣ୍ଡ ଜିତେନ୍ଦ୍ରିୟତା, ଅତୁଳିତ ବଳଧାମତା, ଜ୍ଞାନୀଙ୍କ ମଧ୍ୟରେ ଅଗ୍ରଗଣ୍ୟତା ଆଦି ଅଲୌକିକ ଈଶ୍ୱରୀୟ ଗୁଣ ସମ୍ପନ୍ନ ହୋଇଥିବାରୁ ସେ ଦେବତା କୋଟିକୁ ଆସିଥାନ୍ତି।

"ମନୋଜବଂ ମାରୁତତୁଲ୍ୟବେଗଂ ଜିତେନ୍ଦ୍ରିୟଂ ବୁଦ୍ଧିମତାଂ ବରିଷ୍ଠମ୍।

ବାତାତ୍ମଜଂ ବାନର ଯୂଥ ମୁଖ୍ୟଂ ଶ୍ରୀରାମ ଦୂତଂ ଶରଣଂ ପ୍ରପଦ୍ୟେ।

*ରାମରକ୍ଷା ସ୍ତୋତ୍ର-୩୩*

ପବନ ସୁତ ଶ୍ରୀହନୁମାନ ଥିଲେ ଶ୍ରୀରାମଙ୍କ ପରମ ଦାସ୍ୟଭକ୍ତ। ବାୟୁଙ୍କ ଔରସରୁ ମାତା ଅଞ୍ଜନୀଙ୍କ ଗର୍ଭରୁ ସେ ଜନ୍ମଲାଭ କରିଥିଲେ। ବିଦ୍ୟା ବୁଦ୍ଧିର ବାରିଧି, ଆଜୀବନ ଜିତେନ୍ଦ୍ରିୟ, ଅତୁଳିତ ଜ୍ଞାନଗୁଣର ସାଗର ଶ୍ରୀହନୁମାନଜୀ ଯେପରି ଶୌର୍ଯ୍ୟ ବୀର୍ଯ୍ୟଶାଳୀ ଥିଲେ ସେହିପରି ଅଶେଷ ପରାକ୍ରମୀ ଥିଲେ। ତାଙ୍କର ସୀତାରାମ ଭକ୍ତି ଅବର୍ଣ୍ଣନୀୟ, ଅଚିନ୍ତନୀୟ। ଅତ୍ୟନ୍ତ ବିଶ୍ୱସ୍ତ, ସାହସୀ, ସତ୍ୟନିଷ୍ଠ, କର୍ତ୍ତବ୍ୟନିଷ୍ଠ, ପ୍ରକୃତିବିଦ୍ ଗୁଣରେ ତାଙ୍କର ପଟାନ୍ତର ନାହିଁ। ଅଷ୍ଟସିଦ୍ଧିର ଅଧିକାରୀ ଶ୍ରୀମତ୍ ହନୁମାନଜୀ ଅସୁମାରୀ ଭଗବତ୍ତାଗୁଣ ସମ୍ପନ୍ନ ବ୍ୟକ୍ତିତ୍ୱ। ରାମକଥା, ରାମଗୁଣ ଯେମିତି ଅନନ୍ତ ଅପାର ସେହିପରି ପବନସୁତ ହନୁମାନଙ୍କର ଗୁଣ ଅକଳନୀୟ। ଯେତେ ବଡ଼ ବିଦ୍ୱାନ ହୁଅନ୍ତୁ ନା କାହିଁକି ହନୁମାନ କଥା କହି ବସିଲେ ସବୁ ବହୁତ ସ୍ୱଳ୍ପ ହୋଇଯାଏ।

ଏହି ହନୁମାନ ନିଶ୍ଚିତ ଭାବରେ ଦେବତା କୋଟିର ଅଟନ୍ତି ଯେ କି ଭବିଷ୍ୟତରେ ବ୍ରହ୍ମାଜୀଙ୍କ ଦାୟିତ୍ୱ ତୁଲାଇବେ ବୋଲି ବହୁ ଶାସ୍ତ୍ରୀୟ ପ୍ରମାଣ ରହିଅଛି।

***ଜୟ ଜୟ ଜୟ ହନୁମାନ ଗୋସାଇଁ।***

*(ସଂଗୃହୀତ)*



## ରଘୁବୀରଙ୍କ ଅନନ୍ୟ ଭକ୍ତ
# ମହାବୀର ଶ୍ରୀ ହନୁମାନ

ଶ୍ରୀ ରାଜେନ୍ଦ୍ରଜୀ ଶର୍ମା

ଗୀତା ଦୃଷ୍ଟିରେ ଜ୍ଞାନଯୋଗ, ଭକ୍ତିଯୋଗ ଏବଂ କର୍ମଯୋଗ–ଏ ତିନି ଯୋଗ ଭଗବତ୍ ପ୍ରାପ୍ତିର ସାଧନ ଅଟେ। ଏ ତିନି ସ୍ୱତନ୍ତ୍ର। କିନ୍ତୁ ଯାହାଙ୍କର କର୍ମଯୋଗ ସିଦ୍ଧ ହୋଇ ଯାଇଛି, ତାଙ୍କର ଜ୍ଞାନଯୋଗ ଓ ଭକ୍ତିଯୋଗ ସ୍ୱତଃ ସିଦ୍ଧ ହୋଇଯାଏ। ଯାହାଙ୍କର ଜ୍ଞାନଯୋଗର ପରମ ତତ୍ତ୍ୱ ପ୍ରାପ୍ତି ହୋଇଥାଏ, ତାଙ୍କର କର୍ମଯୋଗ ଓ ଭକ୍ତିଯୋଗ ଆପେ ସିଦ୍ଧ ହୋଇଯାଏ। ଏହି ପ୍ରକାରେ ଭକ୍ତିମାର୍ଗୀଙ୍କର ବି ଜ୍ଞାନଯୋଗ ଆଉ କର୍ମଯୋଗ ସ୍ୱତଃ ସିଦ୍ଧ ହୋଇଥାଏ।

ଭକ୍ତି ସ୍ୱତନ୍ତ୍ର। ଏହାର କୌଣସି ଅବଲମ୍ବନର ଆବଶ୍ୟକତା ନାହିଁ। ଜ୍ଞାନ, ବିଜ୍ଞାନ ସବୁ ଏହାର ଅଧୀନ ବୋଲି ଶ୍ରୀହନୁମାନଙ୍କର ନିଶ୍ଚିତ ଧାରଣା। ତେଣୁ ସେ ଜ୍ଞାନ ସାଧନର ଅଧିକାରୀ ହୋଇଥିଲେ ମଧ୍ୟ ଅନନ୍ୟ ଭକ୍ତିର ଆଶ୍ରୟ ନେଇଛନ୍ତି।

ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅନନ୍ୟ ଭକ୍ତିର ସ୍ୱରୂପ କହିଛନ୍ତି -

"ମତ୍‌କର୍ମକୃତ୍ ମତ୍‌ପରମୋ ମଦ୍‌ଭକ୍ତ ସଙ୍ଗବର୍ଜିତଃ।
ନିର୍ବୈରଃ ସର୍ବଭୂତେଷୁ ଯଃ ସ ମାମେତି ପାଣ୍ଡବ ।" ୧୧/୫୫

ଏହି ଶ୍ଳୋକରେ ଅନନ୍ୟ ଭକ୍ତିର ସାଧନ-ପଞ୍ଚକର ନିରୂପଣ କରାଯାଇଅଛି। (୧) ପ୍ରଥମରେ ମତ୍‌କର୍ମକୃତ - ମୋ ପାଇଁ ସମ୍ପୂର୍ଣ୍ଣ କର୍ତ୍ତବ୍ୟ କର୍ମ କରିବା ଲୋକ; ୨. ମତ୍‌ପରମ୍ - ମୋ ପରାୟଣ ହୁଅ; ୩. ମଦ୍‌ଭକ୍ତ - ମୋ'ନାମ, ରୂପ, ଗୁଣ, ମୋ ଲୀଳା ଭଜନ କରିବା ଲୋକ, ମୋର ଭକ୍ତ ହୁଏ; ୪. ସଙ୍ଗବର୍ଜିତ - ଆସକ୍ତି ରହିତ ହୁଏ ଏବଂ ୫.ସର୍ବଭୂତେଷୁ ନିର୍ବୈରଃ = ସମସ୍ତ ଭୂତ ପ୍ରାଣୀମାନଙ୍କଠାରେ ବୈରଭାବ ରହିତ ହୁଏ। ଶ୍ରୀହନୁମାନଜୀଙ୍କଠାରେ ଏ ପାଞ୍ଚଗୁଣ ପୂର୍ଣ୍ଣ ଭାବରେ ସମାହିତ ହୋଇଅଛି।

## ୧. ମତ୍‌କର୍ମକୃତ

ମତ୍‌କର୍ମକୃତ୍‌ର ତାତ୍ପର୍ଯ୍ୟ ହେଉଛି ସମସ୍ତ କର୍ମକୁ ଭଗବାନଙ୍କୁ ଅର୍ପଣ କରିଦେବା ଅର୍ଥାତ୍ ମନ ବୁଦ୍ଧିରେ ଏହାକୁ ନିଶ୍ଚୟ କରି ଦେବାକୁ ପଡ଼ିବ ଯେ ମୁଁ ସବୁଠି ଏବଂ ସବୁ ସମୟରେ ଭଗବାନଙ୍କ ପାଖରେ ଅର୍ପିତ ହୋଇଅଛି। ମୋର ଏକାନ୍ତ ପ୍ରାପଣୀୟ କେବଳ ଭଗବାନ ହିଁ ଅଟନ୍ତି। ପ୍ରକୃତରେ 'ମତ୍‌କର୍ମ'ରେ ଏହି କର୍ମର ସୂଚନା ଦିଆ ଯାଇଅଛି। କେବଳ ଭଗବାନ ପରାୟଣ ହୋଇ ଭଗବାନଙ୍କ ପାଇଁ କର୍ମ କରାଯାଉ।

ମନ ବୁଦ୍ଧିରେ ଭଗବାନଙ୍କ ପାଖରେ ଅର୍ପିତ ହୋଇ କର୍ମ କରିବା ଅର୍ଥ ହେଉଛି, ଭଗବତ୍ କାର୍ଯ୍ୟ ସମାପନ ହିଁ ଜୀବନର ପରମ ଲକ୍ଷ୍ୟ ହୋଇଯାଉ। ସଚ୍ଚା ଭକ୍ତ ନିଜର ସମୁଦାୟ ଜୀବନକୁ ପ୍ରଭୁଙ୍କ ପାଇଁ ସମର୍ପଣ କରିଦିଏ। ଶ୍ରୀ ହନୁମାନଙ୍କ ବିଷୟରେ ଏହା ପ୍ରସିଦ୍ଧ ଯେ, କେବଳ ରାମ କାର୍ଯ୍ୟ ପାଇଁ ତାଙ୍କର ଅବତରଣ ହୋଇଥିଲା।

"ରାମ କାଜ ଲାଗି ତବ ଅବତାରା" ମାନସ - ୫/୩୦/୩

ନିଜ ସ୍ୱାମୀଙ୍କ କାର୍ଯ୍ୟ ସିଦ୍ଧି ପାଇଁ ମନରେ ତାଙ୍କର ମାନ, ଅପମାନ, ବିଶ୍ରାମ, ଶାରୀରିକ ସୁଖ ବା ଛୋଟ ବଡ଼ କୌଣସି କଥାର ଚିନ୍ତା ରହେ ନାହିଁ। ସମୁଦ୍ର ଲଘନ କରିବା ସମୟରେ ଜଳନିଧି ଇଚ୍ଛା ପ୍ରକଟ କଲେ କି ହନୁମାନଜୀ ମୈନାକ ପର୍ବତ ଉପରେ ଟିକେ ବିଶ୍ରାମ କରିନିଅନ୍ତୁ। ଏହାର ଉତ୍ତରରେ ହନୁମାନଜୀ ବିନୟ ସହକାରେ ପ୍ରକାଶ କଲେ -

"ରାମ କାଜୁ କିନ୍‌ହେ ବିନୁ ମୋହି କହାଁ ବିଶ୍ରାମ।" ମାନସ ୫/୧

ମୋର ଶ୍ରମ କେଉଁଠି ହେଲା ଯେ, ମୁଁ ବିଶ୍ରାମ କରିବି ? 'ମତ୍‌କର୍ମ' ଅନୁସରଣ କରୁଥିବା ଭକ୍ତ ହନୁମାନଙ୍କର ଏହି ଉତ୍ତର ଥିଲା।

ଲଙ୍କାରେ ଯେବେ ହନୁମାନଙ୍କ ଉପରେ ମେଘନାଦ ବ୍ରହ୍ମାସ୍ତ୍ର ପ୍ରୟୋଗ କରି ମୂର୍ଚ୍ଛିତ ଭକ୍ତଙ୍କୁ ନାଗପାଶରେ ବାନ୍ଧି ପକାଇଲେ, ସେତେବେଳେ ପାର୍ବତୀଙ୍କୁ ଶିବ କହିଲେ -

"ପ୍ରଭୁ କାରଜ ଲଗି କପି ହିଂ ବୈଧାୟା।।" ମାନସ -୫/୧୦/୨

ପୁଣି ହନୁମାନଜୀ ନିରଭିମାନତା ପୂର୍ବକ କହିଲେ -

**"ମୋହି ନ କଛୁ ବାଁଧେ କଇ ଲାଜା,**

**କିନ୍ହ ଚହଉଁ ନିଜ ପ୍ରଭୁ କର କାଜା । । ମାନସ ୫/୧୦/୩**

ଲଙ୍କାରୁ ଫେରିବା ପରେ ଶ୍ରୀରାମଚନ୍ଦ୍ରଙ୍କ ପାଖକୁ ଯାଇ ଶ୍ରୀହନୁମାନଜୀ ନିଜେ ନିଜର ମୁଁହରେ ନିଜ କଲା କର୍ମକୁ ନ ବଖାଣି ବରଂ କହିଲେ -

**"ପବନ ତନୟ କେ ଚରିତ ସୁହାଏ,**

**ଜାମ୍ବବନ୍ତ ରଘୁପତିହି ସୁନାଏ ।"**

ବାନର ବାହିନୀଙ୍କ ଆଗରେ ଶ୍ରୀହନୁମାନଜୀ ନିଜ କାର୍ଯ୍ୟରେ ଗୁରୁତ୍ୱ ପ୍ରକାଶ ନ କରି ବରଂ କହିଲେ -

**"ରାମ କୃପା ଭା କାଜୁ ବିଶେଷୀ" - ମାନସ ୫/୩୦/୩**

କାର୍ଯ୍ୟ ତ ବିଶେଷ ଭାବରେ ହେଲା । କିନ୍ତୁ ଏଥିରେ ମୋର କିଛି ଗୌରବ ନାହିଁ । ଶ୍ରୀରାମ କୃପା କାରଣରୁ ଏହା ହେଲା । ଏହି ପ୍ରକାରେ ଅନନ୍ୟ ଭକ୍ତ ଶ୍ରୀହନୁମାନ କେବଳ ଶ୍ରୀରାମଚନ୍ଦ୍ର ପରାୟଣ ହୋଇ ତାଙ୍କ ପାଇଁ କାର୍ଯ୍ୟ କରୁଥିଲେ ।

**୨. "ମତ୍‌ପରମଃ"**

ଏହାର ଭାବ ହେଉଛି, ଏପରି ଭକ୍ତ ଯେ ମୋତେ ପାଇବା ପାଇଁ ସଦାବେଳେ ତତ୍‌ପର ରହେ । କର୍ମ କରେ । ଏପରି ଭଗବତ୍ ପରାୟଣ ହୋଇଥାଏ । ସେ ଭକ୍ତଙ୍କର ସାଧନ ଓ ସିଦ୍ଧି କେବଳ ଭଗବାନ ପ୍ରାପ୍ତି ।

"ସାଧନ ସିଦ୍ଧି ରାମ ପଗ ନେହୁ ।"

ଭକ୍ତ ସର୍ବଦା ଭଗବାନ ପରାୟଣ ହୋଇ ସଗୁଣ ଉପାସକ ନିଜକୁ ଭଗବାନଙ୍କ ଏକ ଯନ୍ତ୍ର ବୋଲି ମାନି ନେଇଥାଏ ।

ହନୁମାନଜୀ ଜାଣନ୍ତି ଯେ ଭଗବାନ ପରାୟଣ ହେଲେ ଜାତି ବିଦ୍ୟା ରୂପ କୁଳ ଧନ କ୍ରିୟା ଆଦିର କୌଣସି ବ୍ୟବଧାନ ରହେ ନାହିଁ ।

"ନାସ୍ତି ତେଷୁ ଜାତି ବିଦ୍ୟା ରୂପ କୁଳ ଧନ କ୍ରିୟାଦି ଭେଦଃ ।" ନାରଦ ଭକ୍ତି ସୂତ୍ର ୭୨

ଭଗବାନ ତ କେବଳ ଭକ୍ତିର ସୂତ୍ରକୁ ଦେଖନ୍ତି । ଏ ଭାବକୁ ନେଇ ଶ୍ରୀହନୁମାନଜୀ ବିଭୀଷଣଙ୍କୁ ମଧ ଶ୍ରୀରାମଙ୍କ ପରାୟଣ ହେବାକୁ ଉପଦେଶ ଦେଇ ଅଛନ୍ତି । ଏ କଥା କହିବା ବେଳେ ସେ ନିଜର ଉଦାହରଣ ଦେଇ ଅଛନ୍ତି -

"କହହୁ କବନ ମେ ପରମ କୁଲୀନା
କପି ଚଞ୍ଚଳ ସବହୀ ବିଧି ହୀନା ।
ପ୍ରାତ ଲେଇ ଯୋ ନାମ ହମାରା
ତେହି ଦିନ ତାହି ନ ମିଲେ ଅହାରା
ଅସ ମେ ଅଧମ ସଖା ସୁନୁ ମୋହୂ ପର ରଘୁବୀର
କୀନ୍‌ହୀ କୃପା ସୁମରି ଗୁଣ ଭରେ ବିଲୋଚନ ନୀର ।" ମାନସ୫/୭

ସଂଜୀବନୀ ଆଣିବା ପ୍ରସଙ୍ଗରେ ଯେବେ ଶ୍ରୀହନୁମାନଜୀ ଦ୍ରୋଣ ପର୍ବତକୁ ନେଇ ଅଯୋଧ୍ୟା ଉପରେ ପହଞ୍ଚିଗଲେ ଏବଂ ଭରତଜୀଙ୍କ ତୀର ଆଘାତରେ ତଳେ ପଡ଼ିଗଲେ ସେତେବେଳେ ସେ ପ୍ରଭୁ ଶ୍ରୀରାମଙ୍କୁ ସ୍ମରଣ କଲେ ।

ପରେଉ ମୁରୁଛି ମହୀ ଲାଗତ ଶାୟକ ।
ସୁମିରତ ରାମ ରାମ ରଘୁନାୟକ" । ମାନସ ୬/୫୧/୧

ଯେବେ ଭରତଜୀ କହିଲେ ଶୈଳ ସହିତ ମୋ ତୀର ଉପରେ ଚଢ଼ିଯାଅ ମୁଁ ସାଙ୍ଗେ ସାଙ୍ଗେ ତୁମକୁ ଶ୍ରୀରାମଙ୍କ ପାଖରେ ପହଞ୍ଚାଇ ଦେବି । ଏଥିରେ ଶ୍ରୀହନୁମାନଜୀଙ୍କର କିଛି ଅଭିମାନ ହୋଇଗଲା । କିନ୍ତୁ ସଙ୍ଗେ ସଙ୍ଗେ ଶ୍ରୀରାମଜୀଙ୍କ ପ୍ରଭାବ ମନେ ପଡ଼ିଯିବାରୁ ସେ ଭରତଜୀଙ୍କୁ ବନ୍ଦନା କରି କହିଲେ -

"ତବ ପ୍ରଭାବ ଉର ରାଖି ପ୍ରଭୁ ଜୈହଉଁ ନାଥ ତୁରଂତ" । ମାନସ ୬/୬୦

ଅର୍ଥାତ୍ ଶ୍ରୀହନୁମାନଜୀ ଅସାଧ କାର୍ଯ୍ୟ କରୁଥିଲେ ମଧ ପ୍ରଭୁଙ୍କ ପ୍ରତାପକୁ ସ୍ମରଣ କରୁଥିଲେ । ଅହଙ୍କାର ଓ ବିମୂଢ଼ତା କର୍ତ୍ତୃତ୍ୱାଭିମାନର କାରଣ ଅଟେ ।

"ଅହଂକାର ବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ ।" ଗୀତା ୩/୨୭

କିନ୍ତୁ ଶ୍ରୀହନୁମାନଜୀଙ୍କଠାରେ ଏହା ଲେଶମାତ୍ର ନଥିଲା । ତେଣୁ ଏହା ତାଙ୍କର କର୍ତ୍ତୃତ୍ୱାଭିମାନ ରହିତ ପ୍ରଭୁପରାୟଣତା ।

## ୩. ମଦ୍‌ଭକ୍ତ -

ଏହାର ତାତ୍ପର୍ଯ୍ୟ ହେଉଛି, ଭକ୍ତିଯୋଗୀ ମୋଠାରେ ତ ଅନନ୍ୟ ପ୍ରେମ ରଖିଥାନ୍ତି। ଏହି ଅନନ୍ୟ ଭକ୍ତ ଆନନ୍ଦ ବିଭୋର ହୋଇ ନିଜେ ନଜେ ଭଗବାନଙ୍କ ପାଖରେ ସମର୍ପିତ ହୋଇଥାନ୍ତି।

ଶ୍ରୀହନୁମାନଜୀ ଭଗବାନ ଶ୍ରୀରାମଙ୍କର ସହଜ ସେବକ। ସହଜ ସେବକ ନିଷ୍କାମ ଭକ୍ତ ହୋଇଥାନ୍ତି। ସେ କିଛି ସ୍ୱାର୍ଥ ବା କାରଣବଶତଃ ଶ୍ରୀରାମଙ୍କ ସେବକ ନୁହନ୍ତି।

**"ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ।"**

ଏହି ଚାରିପ୍ରକାର ଭକ୍ତଙ୍କ ଭିତରେ ଉଚ୍ଚକୋଟୀର ଜ୍ଞାନୀ ଅର୍ଥାତ୍ ନିଷ୍କାମ ଭାବରେ ଭୂଷିତ ଭଗବାନଙ୍କ ଭକ୍ତ ଅଟନ୍ତି। ଏମାନଙ୍କ ସ୍ୱରୂପ ସମ୍ବନ୍ଧରେ ତୁଳସୀ ଦାସ କହନ୍ତି -

ଜାହି ନ ଚାହିଅ କବହୁଁ କଛୁ ତୁମ୍ହ ସନ ସହଜ ସନେହ। ମାନସ ୨/୧୩୧

ଜ୍ଞାନୀ ଭକ୍ତ ତ ମୋକ୍ଷ ଚାହାନ୍ତି। କିନ୍ତୁ ଭଗବତ୍ ଭକ୍ତ ମୋକ୍ଷ ନଚାହିଁ "ସହଜ-ସ୍ନେହ-ଅନପାୟିନୀ ଭକ୍ତି" କାମନା କରନ୍ତି। ଏହି ଦୃଷ୍ଟିରୁ ଭକ୍ତର ଶରୀର ସେପରି ହେବା ଆବଶ୍ୟକ। ବିନା ଶରୀରରେ ଭକ୍ତି ହୁଏ ନାହିଁ। ଜ୍ଞାନଯୋଗର ବୋଧପ୍ରାପ୍ତ ହୁଏ ଏବଂ ଭକ୍ତିଯୋଗରେ ପ୍ରେମ। ଭକ୍ତିଯୋଗୀ ଭଗବାନଙ୍କର ବିଶେଷ ପ୍ରିୟ। ଜ୍ଞାନୀଯୋଗୀଙ୍କର ନିଜର ସ୍ୱରୂପ ହିଁ ପ୍ରିୟ। ଶ୍ରୀ ତୁଳସୀ ଦାସ ଲେଖିଛନ୍ତି -

"ସଗୁଣୋପାସକ ମୋକ୍ଷ ନଲେହୀ
ତିନ୍‌ହ କହୁଁ ରାଗ ଭଗତି ନିଜ ଦେହୀ"। (ମାନସ୬/୧୧୨/୪)

ଶ୍ରୀ ହନୁମାନଜୀ ଏହାକୁ ହିଁ ମାଗନ୍ତି -

"ସ୍ନେହୀ ମେ ପରମୋ ରାଜଂସ୍ୱୟି ତିଷ୍ଠତୁ ନିତ୍ୟଦା
**ଭକ୍ତିଶ୍ଚ ନିୟତା ବୀର ଭାବୋ ନାନ୍ୟତ୍ର ଗଚ୍ଛତୁ।(ବାଲ୍ମିକୀ ରାମାୟଣ ୩/୪୦/୧୬)**

ହେ ମହାରାଜ। ଆପଣଙ୍କ ପ୍ରତି ମୋର ପରମ ସ୍ନେହ ସଦାବେଳେ ରହୁ । ହେ ବୀର।, ଆପଣଙ୍କଠାରେ ମୋର ନିଶ୍ଚଳ ଭକ୍ତି ସଦାବେଳେ ରହୁ। ଆପଣଙ୍କୁ ଛାଡ଼ି ମୋର ଆଉ କାହାଠାରେ ବି ଆନ୍ତରିକ ଅନୁରାଗ ନହେଉ।

'ମଦ୍‌ଭକ୍ତ' ଅନୁସାରେ ଶ୍ରୀହନୁମାନଜୀଙ୍କ ଠାରେ ଭଗବାନ ଶ୍ରୀରାମଙ୍କ ପ୍ରତି ଅନନ୍ୟ ପ୍ରେମ ଥିଲା। ଆଉ ସେ ପୂର୍ଣ୍ଣ ଭାବରେ ଭଗବାନ ଶ୍ରୀରାମଙ୍କ ପ୍ରତି ସମର୍ପିତ ହୋଇ ତାଙ୍କର ଭଜନ, ଧ୍ୟାନ, ଗୁଣଗାନ ଆଉ କୀର୍ତ୍ତନାଦି ଦେହ ମନରେ ଶୁଦ୍ଧ ହୋଇ ମଗ୍ନ ହୋଇ ରହନ୍ତି।

**୪. ସଙ୍ଗବର୍ଜିତଃ -**

ସଙ୍ଗରୁ ବା ସଙ୍ଗଠାରୁ ରହିତ ଅର୍ଥାତ୍ ସମସ୍ତ ପ୍ରାଣୀ ଓ ପଦାର୍ଥଠାରୁ ଆସକ୍ତି ରହିତ ହେବା। ଭଗବାନଙ୍କୁ ଛାଡ଼ି ଯାହାର କେଉଁଠି ବା କେଉଁ ପଦାର୍ଥରେ କିଞ୍ଚିତ ମାତ୍ର ପ୍ରେମ ନଥାଏ, ସେ 'ସଙ୍ଗବର୍ଜିତ' ଅଟନ୍ତି। ଯେଉଁମାନେ ସଙ୍ଗବର୍ଜିତ ନୁହନ୍ତି ସେମାନେ ରାଗ-ଦ୍ୱେଷରେ ପ୍ରେରିତ ହୋଇ ତାଙ୍କର ସମସ୍ତ କର୍ମ କରିଥାନ୍ତି। ରାଗ-ଦ୍ୱେଷରେ ସଂସାର ପ୍ରତି ଆସକ୍ତି ବଢ଼ିଥାଏ । ଶ୍ରୀହନୁମାନଜୀଙ୍କର ସଂସାର ପ୍ରତି କିଞ୍ଚିତ ମାତ୍ର ରାଗ ଦ୍ୱେଷ ବା ଆସକ୍ତି ନଥିଲା । ତାଙ୍କର ସବୁ କେବଳ ଶ୍ରୀରାମ ହିଁ ଥିଲେ। ଭକ୍ତି ମାର୍ଗର ସିଦ୍ଧାନ୍ତ ଏହି ଯେ ଯାହାର ଭଗବାନଙ୍କ ପ୍ରତି ରାଗ ହୋଇଯାଏ ତାହାର ସଂସାରର କୌଣସି ପ୍ରାଣୀ ବା ପଦାର୍ଥ ପ୍ରତି ଦ୍ୱେଷ ହୋଇନଥାଏ। ତାଙ୍କର ଦୃଷ୍ଟିରେ ପରମାତ୍ମାଙ୍କ ବିନା ଆଉ କେହି ପ୍ରେମାସ୍ପଦ ହୋଇନ ପାରନ୍ତି। ଏହି ଦୃଷ୍ଟିରୁ ହନୁମାନଜୀଙ୍କ ଭଗବାନ ଶ୍ରୀରାମଙ୍କ ଅନନ୍ୟଭକ୍ତ ହୋଇଥିବାରୁ ତାଙ୍କୁ ସଙ୍ଗବର୍ଜିତ ବୋଲି କୁହାଯିବା ଯୁକ୍ତିସଙ୍ଗତ।

**୫.ସର୍ବଭୂତେଷୁ ନିର୍ବୈରଃ : -**

ସଂସାରର ସମସ୍ତ ପ୍ରାଣୀମାନଙ୍କ ପ୍ରତି ଦ୍ୱେଷ ରହିତ ଭାବନା "ଅଦ୍ୱେଷ୍ଟା ସର୍ବଭୂତାନାମ୍"। ଏହା ହିଁ ଭକ୍ତିମାର୍ଗର ଅନ୍ତିମ ସାଧନା । ଯାହା ଆଗରୁ କୁହାଯାଇଥିଲା ସଂସାରରେ ରାଗ ବା ଆସକ୍ତି ନରହିଲେ ଭଗବାନଙ୍କ ପ୍ରତି ଅନନ୍ୟ ପ୍ରେମ ହୋଇଥାଏ। ରାଗ ରହିତ ହେଲେ ଆଉ କାହାପ୍ରତି ବୈରଭାବ ରହେ ନାହିଁ।

ଏହି ପ୍ରକାରେ ସାଧନ-ପଞ୍ଚକର ଅନ୍ତିମ ସାଧନା - 'ନିର୍ବୈରଃ ସର୍ବଭୂତେଷ" "ସଙ୍ଗ ରହିତ"ର ଅନ୍ତର୍ଗତ ହୋଇ ଯାଇଥାଏ।

ପ୍ରାଣୀଗଣଙ୍କ ମଙ୍ଗଳ ପାଇଁ ପ୍ରଭୁଙ୍କର ସମସ୍ତ କାର୍ଯ୍ୟ ସମ୍ପନ୍ନ ହୋଇଥାଏ। ଭଗବାନ ଶ୍ରୀରାମଙ୍କ ଦ୍ୱାରା ଯେଉଁ ସବୁ ରାକ୍ଷସ ବା ରାକ୍ଷସୀଙ୍କୁ ନିଧନ କରାଯାଇଛି ସେ ସେମାନଙ୍କୁ ନିଜର ପଦ ଦେଇଛନ୍ତି।

ଯେପରି ତାଡ଼କୀ - "ଦୀନ ଜାନି ତେହି ନିଜ ପଦ ଦୀନ୍‌ହା"

ବିରାଧ - "ଦେଖି ଦୁଃଖୀ ନିଜ ଧାମ ପଠାୟା"

ମାରିଚ - "ମୁନି ଦୁର୍ଲଭ ଗତି ଦୀନ୍‌ହି ସୁଜାନା"

କୁମ୍ଭକର୍ଣ୍ଣ - "ତାସୁ ତେଜ ପ୍ରଭୁ ବଦନ ସମାନା"

ରାବଣ - "ତାସୁ ତେଜ ସମାନ ପ୍ରଭୁ ଆନନ ।"

ସବୁ ରାକ୍ଷସ - "ମୁକ୍ତ ଭଏ ଛୁଟେ ଭବ ବନ୍ଧନ।"

ଏହି ପ୍ରକାରେ ଯେବେ ଶ୍ରୀହନୁମାନଜୀ ମକରୀକୁ ମାରିଦେଲେ ସେ ମଧ୍ୟ ଦିବ୍ୟଯାନରେ ଚଢ଼ି ଆକାଶ ମାର୍ଗରେ ରହି ହନୁମାନଜୀଙ୍କ ପ୍ରତି ଅଶେଷ କୃତଜ୍ଞତା ଜଣାଇଥିଲେ। ବହୁ ବିଷୟ ବା ଦୃଷ୍ଟାନ୍ତରୁ ଏହା ଜଣାଯାଏ ଯେ ଅନେକ ସମୟରେ ଅନନ୍ୟ ଭକ୍ତଙ୍କଠାରେ ପ୍ରଭୁଙ୍କର ଶକ୍ତି ଅବତରିତ ହୋଇଥାଏ। କାରଣ ଅନନ୍ୟ ଭକ୍ତ କେବଳ ପ୍ରଭୁଙ୍କ ପ୍ରେରଣାରେ ହିଁ ତାଙ୍କର ସମସ୍ତ କର୍ମ କରିଥାନ୍ତି।

ଅନନ୍ୟ ଭକ୍ତିର ଯେଉଁ ପଞ୍ଚସାଧନ - ମତ୍‌କର୍ମକୃତ୍‌, ମତ୍‌ପରମଃ, ମଦ୍‌ଭକ୍ତଃ, ସଙ୍ଗବର୍ଜିତଃ ଆଉ ସର୍ବଭୂତେଷୁ ନିର୍ବୈରଃ - କୁହାଯାଇଅଛି, ତା'ଭିତରୁ ଗୋଟିଏ ସାଧନ ସିଦ୍ଧ ହୋଇଗଲେ ଆପେ ଆପେ ଅନ୍ୟ ସାଧନ ଆଉ ଭଗବାନଙ୍କ ଭକ୍ତି ସବୁ ମିଳିଯାଇଥାଏ। ହନୁମାନଜୀଙ୍କ ଚରିତ୍ରକୁ ସ୍ମରଣ କରି ତାଙ୍କ ଭଜନ କଲେ ଭଗବାନ ଶ୍ରୀରାମଙ୍କ ପ୍ରାପ୍ତି ହୋଇଯାଇଥାଏ।

"ତୁମ୍‌ହରେ ଭଜନ ରାମ କୋ ପାୱେ।"



# ଶ୍ରୀ ହନୁମାନଜୀ ଏବଂ "ଓଁ"କାର
# ଏକ ତତ୍ତ୍ୱ

ବିଦ୍ୟାବାଚସ୍ପତି ପଣ୍ଡିତ ଶ୍ରୀ ଶ୍ରୀକଣ୍ଠଜୀ ଶର୍ମା ଶାସ୍ତ୍ରୀ
'ଚକ୍ରପାଣି'

ଦେବତାମାନଙ୍କର ପରୋକ୍ଷ-ବୃତ୍ତିଦ୍ୱାରା ହିଁ ମାନବ ବା କୌଣସି ସାଧାରଣଜୀବ ଦିବ୍ୟ ଏବଂ ସାତ୍ତ୍ୱିକ ସମ୍ପତ୍ତି ପ୍ରାପ୍ତ କରିପାରେ। ସିଦ୍ଧାନ୍ତ ଏହି ଯେ -

**"ପରୋକ୍ଷପ୍ରିୟା ଇବ ହି ଦେବାଃ ପ୍ରତ୍ୟକ୍ଷଦ୍ୱିଷଃ। (ବୃଂଉଂ ୪/୨/୨)"**
**ଯତ୍ପରୋକ୍ଷ ପ୍ରିୟ ଦେବୋ ଭଗବାନ୍ ବିଶ୍ୱଭାବନ ।**

(ଶ୍ରୀମଦ୍ ଭାଗବତ ୪/୨୮/୬୫)

ଯେଉଁ ପ୍ରକାର ନିରାକାର ବ୍ରହ୍ମର ବାଚକ ସାକାରରୂପକ ଛଳରେ "ଓଁ" କାର ହିଁ ଅଟେ, ସେହି ପ୍ରକାର ଶ୍ରୀ ହନୁମାନଜୀ ନିଜ ନାମର ପରୋକ୍ଷ ବୃତ୍ତିଦ୍ୱାରା ବ୍ରହ୍ମା-ବିଷ୍ଣୁ-ଶିବାତ୍ମକ 'ଓଁ'କାରର ପ୍ରତୀକ ଅଟନ୍ତି। ସମ୍ଭବତଃ ଶ୍ରୀ ତୁଳସୀଦାସଜୀ ଏହି ଗୂଢ଼ଭାବକୁ ହୃଦୟରେ ରଖି 'ଅଂଜନିପୁତ୍ର ପବନସୁତନାମା' - ଏହି ସ୍ତୁତି-ବିଶେଷଣ କହିଛନ୍ତି। ପୁତ୍ର ପିତାର ଅତ୍ମା ଅଟେ। "ଆତ୍ମା ବୈ ଜାୟତେ ପୁତ୍ରଃ" ତେଣୁ ପବନସୁତ ପବନଠାରୁ ଭିନ୍ନ ନୁହଁନ୍ତି ଏବଂ ପବନ ପ୍ରାଣ ସଂଜ୍ଞାବାନ୍ ବାୟୁରୁ ଅଭିନ୍ନ ଅଟେ-ତେଣୁ ଓଁ ପ୍ରାଣରୁ ଭିନ୍ନ ନୁହେଁ, କାରଣ ପ୍ରାଣୋପାସନା ସଫଳତା ଅଟେ।

> 'ଆଗତା ସର୍ବେ କାମନାଂ ଭବତି ୟ ଏତଦେବଂ ବିଦ୍ୱାନକ୍ଷର ମୁଦ୍ଗୀଥମୁପାସ୍ତ ଇତ୍ୟଧ୍ୟାତ୍ମମ୍।' (ଛାଂ ଉଂ ୧/୨/୧୦)

ଉଦ୍ଗୀଥ ଓଁକାର ଅଟେ। (ଛାଂ ଉଂ ୧/୧୦ର ଶଙ୍କରଭାଷ୍ୟ ରେ - 'ନ ଓଁକାରସୀ କର୍ମାଙ୍ଗତ୍ୱମାତବିଜ୍ଞାନମେବ'..... ରୁ ଉପକ୍ରମ କରି 'ପ୍ରକୃତସ୍ୟ ଉଦ୍ଗୀଥସ୍ୟ ଉଦ୍ଗୀଥାଖ୍ୟସ୍ୟାକ୍ଷର ସ୍ୟାଥ ବ୍ୟାଖ୍ୟାନଂ ଭବତି।' - ପର୍ଯ୍ୟନ୍ତ ପାଠ ଓଁକାରର ଉଦ୍ଗୀଥ-ସଂଜ୍ଞାର ପ୍ରମାଣ।

ତାନ୍ତ୍ରିକ 'ବର୍ଣ୍ଣବୀଜକୋଶ'ର ସିଦ୍ଧାନ୍ତ ଅନୁସାରେ ମଧ୍ୟ ହନୁମାନଜୀ ଏବଂ ଓଁକାର ରେ ଧର୍ମସାମ୍ୟତା ନିମ୍ନ ନିର୍ଦ୍ଦିଷ୍ଟ ପ୍ରକାରରେ ସୁସ୍ପଷ୍ଟ ଅଟେ -

'ହ' - ଆକାଶବୀଜ ଅଟେ, ଯାହା ଆଞ୍ଜନେୟ (ହନୁମାନଜୀ) ର ନାମାକ୍ଷର ବିଷ୍ଣୁତତ୍ତ୍ୱର ଦ୍ୟୋତକ ଅଟେ। କୋଶଶାସ୍ତ୍ରରେ ଆକାଶ ଦ୍ରବ୍ୟକୁ 'ବିଷ୍ଣୁପଦମ୍' କୁହାଯାଇଛି। ଯଥା- 'ବିୟଦ୍ ବିଷ୍ଣୁପଦଂ ବା ତୁ ପୁଂସ୍ୟାକାଶ ବିହାୟସୀ'-ଇତ୍ୟମରଃ। ଏହି ପ୍ରକାର ନାମର ପ୍ରଥମ ଅକ୍ଷର 'ହ' କାର ବିଷ୍ଣୁତତ୍ତ୍ୱ ସିଦ୍ଧ ହେଲା, ଯାହା ଓଁକାର (ଅ+ଉ+ମ)ର ପ୍ରଥମ ଭାଗ ଅକାରରୁ ଗୃହୀତ - 'ଅକାରୋ ବାସୁଦେବଃ ସ୍ୟାତ୍'। 'ନୁ' ଏହା ହନୁମାନଙ୍କ ନାମର ଦ୍ୱିତୀୟ ଅକ୍ଷର, ଏଥିରେ ଯେଉଁ ଉକାର ଅଛି, ତାହା ଶିବତତ୍ତ୍ୱର ଦ୍ୟୋତକ ଅଟେ।

ମେଦିନୀକୋଶ ର "ଉ" ସମ୍ବୋଧନରୋଷୋକ୍ତ୍ୟୋଃ' - ଏହି ବଚନ ଅନୁସାରେ ରୁଦ୍ରରୂପ ଶିବ ହିଁ ସିଦ୍ଧ ହେଉଅଛି। ଶ୍ରୀମଦ୍‌ଭାଗବତ ପାରମହଂସ୍ୟସଂହିତାରେ ତ ସ୍ପଷ୍ଟରୂପେ 'ରୁଦ୍ରଃ କ୍ରୋଧସମୁଦ୍‌ଭବଃ' କହି କାର୍ଯ୍ୟ-କାରଣର ଅଭିନ୍ନତାର ଆଧାରରେ ରୋଷକୁ ରୁଦ୍ର ଏବଂ ରୁଦ୍ରକୁ ରୋଷ ସିଦ୍ଧ କରି ଦିଆଯାଇଛି। ଏହି ପ୍ରକାର 'ନୁ' ନାମର ଦ୍ୱିତୀୟ ଅକ୍ଷର ଶିବତତ୍ତ୍ୱ ସିଦ୍ଧ ହେଲା।

'ମାନ୍' ନାମରେ ତୃତୀୟ ଭାଗରେ ଯେଉଁ 'ମ' ଏକ ଭାଗ ଅଟେ (କ୍ୱଚିଦେକଦେଶୋଽପି ଗୃହ୍ୟତେ) ଏହା ବିନ୍ଦୁନାଦ ଶୂନ୍ୟ ଅନୁସ୍ୱାରର ବୋଧକ ଅଟେ।

ତନ୍ତ୍ରଗ୍ରନ୍ଥ 'ବର୍ଣ୍ଣବୀଜ-ପ୍ରକାଶ-କୋଶ' ଅନୁସାରେ 'ମ'କାର ବର୍ଣ୍ଣ ଉପସ୍ଥର ବୋଧକ। ଉପସ୍ଥ-ଅଙ୍ଗର ଦେବତା ପ୍ରଜାପତି ବ୍ରହ୍ମା ଅଟନ୍ତି। ଏଣୁ 'ମ'କାରକୁ ବ୍ରହ୍ମତତ୍ତ୍ୱମଧ୍ୟ କୁହାଯାଇପାରେ।

ଏହି ପ୍ରକାର ସମଷ୍ଟିଶକ୍ତିରୂପରେ ଓଁ ବ୍ରହ୍ମା, ବିଷ୍ଣୁ, ମହେଶ - ଏହି ତିନିହେଁ ଆଦି କାରଣ-ତତ୍ତ୍ୱର ମଧ୍ୟ ପ୍ରତୀକ। ନିକର୍ଷ ଏହା ହେଲା ଯେ 'ହ-ଅ, ନ-ଉ, ମ-ତ୍-ହନୁମାନ - 'ଓଁ' ଏକତତ୍ତ୍ୱ ସିଦ୍ଧ ହେଲା। ଏହି ପ୍ରକାର ହନୁମାନଜୀଙ୍କର ଉପାସନା ସାକ୍ଷାତ୍ ଓଁ ତତ୍ତ୍ୱ ଉପାସନା ହୋଇଥିବାରୁ ପରବ୍ରହ୍ମଙ୍କର ଉପାସନା ହିଁ ହେଲା।

ଜନ୍ମ-ମୃତ୍ୟୁ ତଥା ସାଂସାରିକ ବାସନାମାନଙ୍କର ମୂଳଭୂତ ମାୟାର ବିନାଶ ବ୍ରହ୍ମଉପାସନା ବିନା ସମ୍ଭବ ନୁହେଁ। ସେହି ଅଚିନ୍ତ୍ୟ ଅବାଚ୍ୟ ବ୍ରହ୍ମର ସ୍ୱରୂପ ହିଁ ଓଁକାର ଅଟେ। ଏହାକୁ ଦର୍ଶନଶାସ୍ତ୍ରମାନଙ୍କରେ ପ୍ରଣବ ନାମରେ କୁହାଯାଇଛି - 'ତସ୍ୟ ବାଚକଃ ପ୍ରଣବଃ'। 'ତଜ୍ଜପସ୍ତଦର୍ଥଭାବନମ୍।' (ଯୋଗଦର୍ଶନ ଅଂ ୧ ସୂତ୍ର - ୨୭-୨୮)

ଶିବପୁରାଣରେ ୧୭ ଅଧ୍ୟାୟରେ ପ୍ରଣବର ନିର୍ବଚନ କରିବାକୁ ଯାଇ କୁହାଯାଇଛି - ଏକ ପ୍ର ଏବଂ ଦ୍ୱିତୀୟ 'ଣବ'। 'ପ୍ର' ର ଅର୍ଥ ହେଲା - କର୍ମକ୍ଷୟ ପୂର୍ବକ, 'ନବ'ର ଅର୍ଥ ହେଲା ନୂତନ ଜ୍ଞାନ ଦେବାଲୋକ। 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' ଆଦି ଶ୍ରୁତି ବାକ୍ୟରେ ଜ୍ଞାନକୁ ବ୍ରହ୍ମ କୁହାଯାଇଛି।

ଅଥବା 'ପ୍ର'ର ଭାବ ହେଲା - ପ୍ରକୃତିରୁ ସୃଷ୍ଟି ହୋଇଥିବା ସଂସାରରୂପୀ ମହାସାଗର ଏବଂ 'ଣବ'ର ଭାବ ହେଲା - ଭଗସାଗରରୁ ପାରିକରି ଦେଉଥିବା ନାବ। ତୃତୀୟରେ ଆହୁରି ଗୋଟିଏ ଭାବ-ନିର୍ଦ୍ଦେଶ କରାଯାଇଛି। ପ୍ର - ପ୍ରକର୍ଷଣ, 'ନ' ଅର୍ଥାତ୍ 'ବଃ' ଯୁଷ୍ମାନ୍ ମୋକ୍ଷତେ - ଇତି ପ୍ରଣବଃ ଅର୍ଥାତ୍ ପ୍ରଣବ ନିଜର ଉପାସନାକୁ ମୋକ୍ଷ ପର୍ଯ୍ୟନ୍ତ ପହଞ୍ଚାଇ ଦିଏ। ତେବେ ଶ୍ରୀ ହନୁମାନଜୀ କଣ କମ୍ ଅଟନ୍ତି ?

ଉକ୍ତ ପ୍ରଣବର ଦୁଇଟି ଭେଦ ଅଛି ସୂକ୍ଷ୍ମ ଏବଂ ସ୍ଥୂଳ। ସୂକ୍ଷ୍ମ ଓଁକାର ଏକାକ୍ଷର ରୂପରେ ଏବଂ ସ୍ଥୂଳ ଓଁକାର 'ନମଃ ଶିବାୟ'- ଏହି ପଞ୍ଚାକ୍ଷର ମନ୍ତ୍ରରୂପରେ ଅଟେ। ଏଠାରେ ଶ୍ରୀ ହନୁମାନଜୀଙ୍କୁ 'ଶିବ-ଅଂଶ' ସର୍ବସମ୍ମତ ଭାବରେ ମାନି ନିଆଯାଇଛି।

ଗୋସ୍ୱାମୀ ଶ୍ରୀ ତୁଳସୀଦାସଜୀ ମଧ୍ୟ ହନୁମାନଜୀଙ୍କ ସ୍ୱରୂପରେ ଏହି ଝଲକ ଦେଖାଇଛନ୍ତି। "ସୂକ୍ଷ୍ମ ରୂପଧରି ସିୟହି ଦିଖାୱା।" "ଭୀମରୂପଧରି ଅସୁର ସଂହାରେ।" (ଭୀମ=ସ୍ଥୂଳ)

ଏହାକୁ ଦୀର୍ଘ ଏବଂ ହ୍ରସ୍ୱ ପ୍ରଣବ ରୂପରେ ମଧ୍ୟ ନିରୁକ୍ତ କରାଯାଇଛି। ଦୀର୍ଘ ପ୍ରଣବରେ ଅକାର, ଉକାର, ମକାର, ବିନ୍ଦୁ, ନାଦ, ଶବ୍ଦ, କାଳ ଏବଂ କଳା ଏହି ଆଠ ଶାଳ ଅଟେ, ଯାହା ଯୋଗୀଜନଙ୍କ ଦ୍ୱାରା ମଧ୍ୟ ସାଧ୍ୟ।

ଏହି ପ୍ରଣବରେ ଅ-ଶିବ, ଉ-ଶକ୍ତି, ମ-ଦୁହିଁଙ୍କର ଏକତା, - ଏହି ତିନି ତତ୍ତ୍ୱ ଅଟେ। ଏହା ନିବୃତ୍ତିମାର୍ଗରେ ଯୁକ୍ତ ହେବାପାଇଁ ଜୀବସାଧାରଣଙ୍କର ଜାପ୍ୟ ଅଟେ।

ଏହି ପ୍ରକାର ଉକ୍ତ ରହସ୍ୟର ପ୍ରତିବିମ୍ବ ଶ୍ରୀ ହନୁମାନଜୀଙ୍କଠାରେ ସ୍ପଷ୍ଟ ପ୍ରତିବିମ୍ବିତ, ଅର୍ଥାତ୍ ମାୟା (ସଂସାର) ର ନିବୃତ୍ତି ବ୍ରହ୍ମଜ୍ଞାନଦ୍ୱାରା ହୁଏ। ଏହି ଭାବ ଈଶାବାସ୍ୟୋପନିଷଦ୍ (୧୨)ରେ ସ୍ପଷ୍ଟରୂପରେ ଦର୍ଶାଯାଇଛି -

**'ତତୋ ଭୂୟ ଇବ ତେ ତମୋ ୟ ଉ ସମ୍ଭୂତ୍ୟା ରତାଃ।**

ଅନ୍ୟ କଥାରେ ଯେପରି ଉକ୍ତ ସିଦ୍ଧାନ୍ତରେ ବ୍ରହ୍ମର ବାଚକ "ଓଁ", ମାୟାର ସଂହାର କରି ସଂସାର ବଂଧନରୁ ମୁକ୍ତ କରିଦିଏ। ସେହି ପ୍ରକାର ଶ୍ରୀହନୁମାନଜୀ ମହାରାଜ (ଯେ ଓଁକାରର ସାକ୍ଷାତ ମୂର୍ତ୍ତି ଅଟନ୍ତି) ଲଙ୍କା ରାକ୍ଷସୀରୂପିଣୀ ମାୟା ଉପରେ ବିଜୟ କରି ପରମଜ୍ଞାନସ୍ୱରୂପିଣୀ ବ୍ରହ୍ମରୂପା ଚିଦ୍ରୂପାଶକ୍ତି ଶ୍ରୀ ସୀତାଦେବୀଙ୍କୁ ପ୍ରାପ୍ତ କରିଛନ୍ତି ଏବଂ ଶ୍ରୀରାମଙ୍କୁ ମହାନ୍ ସଙ୍କଟରୁ ବଞ୍ଚାଇଛନ୍ତି। ଏହି ବିବେଚନାରୁ ସିଦ୍ଧ ହେଲା ଯେ, ଶ୍ରୀ ହନୁମାନ ଏବଂ ଓଁମ୍ ଗୋଟିଏ ତତ୍ତ୍ୱ ଅଟେ।



# ଶ୍ରୀ ହନୁମାନ୍

*ଶ୍ରୀ ମହାମେଧାନନ୍ଦନାଥ ସରସ୍ୱତୀ*

**ଭା**ରତବର୍ଷର ସଂସ୍କୃତି ଓ ଧର୍ମ ପୁରାତନ ହୋଇ ମଧ୍ୟ ନିତ୍ୟ ନୂତନ ବୋଲି - 'ସନାତନ' ଗିରିବନ ସମାଚ୍ଛାଦିତ ଏ ଦେଶର ପ୍ରାକୃତିକ ପରିବେଶରେ ଏକ ଆଦିମ ବନ୍ୟ ଓ ବାନର ସଂସ୍କୃତି ଥିଲା। 'ବନେ ଭବଂ ବାନଂ-ତଦ୍ ରାତି ଇତି ବାନରଃ'। ବଣରୁ ଜାତ-ବାନ-ତାହାକୁ ଯେ ଗ୍ରହଣ କରେ ସେ ବାନର। ଏମାନେ ଆମେ ଦେଖୁଥିବା ମାଙ୍କଡ଼ ନଥିଲେ। ଏମାନେ ନର ସଦୃଶ ଆଦିମ ପ୍ରାଣୀ ହୋଇଥିବାରୁ ବିକଳ୍ପ ନର ବା 'ବା-ନର' ନାମରେ କଥିତ ହେଉଥିଲେ। ଏଠାରେ 'ଇବାର୍ଥେ ବା ପ୍ରୟୋଗ' ବୋଲି ବୁଝିବାକୁ ହେବ। ଏପରି ପ୍ରୟୋଗ ଉତ୍ତରମେଘର 'ପଦ୍ମିନୀଂ ବାନ୍ୟରୂପାମ୍'ରେ କାଳିଦାସ କରିଥିବା କଥା ମଲ୍ଲିନାଥ ଉଲ୍ଲେଖ କରିଛନ୍ତି। ରାମାୟଣ ଆମର ସେଇ ଆଦିମ ପ୍ରତ୍ନ ସଂସ୍କୃତିର ବାହକ। ମହାବଳୀ ବାଳି ଇନ୍ଦ୍ରପୁତ୍ର; ସୁଗ୍ରୀବ-ସୂର୍ଯ୍ୟପୁତ୍ର; ହନୁମାନ- ପବନସୁତ; ଏମାନେ କେହିହେଲେ ଆଜିର ଭୟକାତର କ୍ଷୁଦ୍ରକାୟ ମର୍କଟ ନଥିଲେ। ଏମାନଙ୍କର ଏକ ସଂସ୍କୃତି ଥିଲା। ସେ ସଂସ୍କୃତିରେ ହୁଏତ ବଡ଼ଭାଇ ବାଳିର ଅନୁପସ୍ଥିତିରେ ବାଳି ସ୍ତ୍ରୀକୁ ସାନଭାଇ ସୁଗ୍ରୀବ ଗ୍ରହଣ କରିପାରୁଥିଲା, କିମ୍ବା ସାନଭାଇ ସୁଗ୍ରୀବକୁ ବିତାଡ଼ିତ କରି ସୁଗ୍ରୀବ ସ୍ତ୍ରୀକୁ ବଡ଼ଭାଇ ବାଳି ଗ୍ରହଣ କରିପାରୁଥିଲା ଏବଂ ଏମାନଙ୍କର ଅନିର୍ଦ୍ଦିଷ୍ଟ ପିତୃତ୍ୱକୁ ପୁରାଣକାରମାନେ ହୁଏତ ସୂର୍ଯ୍ୟ, ଇନ୍ଦ୍ର ପବନ ପ୍ରଭୃତିଙ୍କ ସହ ସମ୍ବନ୍ଧିତ କରିଥିଲେ। ନରୋତ୍ତମ ଆର୍ଯ୍ୟ ରାମ ଏହି ବାନରୋତ୍ତମଙ୍କ ସଂସ୍କୃତିର ଆର୍ଯ୍ୟ କରଣ କରିଥିଲେ ଏବଂ ସେମାନଙ୍କୁ ନେଇ ଅନାର୍ଯ୍ୟ ଅସୁରମାନଙ୍କ ସହ ଯୁଦ୍ଧ କରିଥିଲେ। ଅନାର୍ଯ୍ୟ ବାନରବଳ ଗଛ ପଥରରେ ପ୍ରତ୍ୟକ୍ଷ ଯୁଦ୍ଧ କରୁଥିଲେ। ଆର୍ଯ୍ୟସୁର ରାମଚନ୍ଦ୍ରଙ୍କ ଅସୁର ରାବଣସହ ଯୁଦ୍ଧର ବିବରଣୀ ହିଁ ରାମାୟଣ କଥା।

ଭାରତୀୟ ଆର୍ଯ୍ୟମାନେ ନିଜକୁ ସୁର (ସୁଷ୍ଠୁଶୋଭନଂ ରାଜତେ) ବା ଦୀପ୍ତିମାନ୍ ମନେ କରୁଥିଲେ ଏବଂ ନିଜଠାରୁ ଅଲଗା ସଂସ୍କୃତିର ଲୋକଙ୍କୁ 'ସୁରଦ୍ୱିଷ୍ ବା ଅସୁର' ବୋଲି କହୁଥିଲେ। ଭାରତେତର ଇରାନୀୟମାନଙ୍କ ସହିତ ମଧ୍ୟ ଏମାନଙ୍କର ସଂସ୍କୃତିଗତ ବିରୋଧ ଥିଲା। ତେଣୁ ଆମର ଭାରତୀୟ ଆର୍ଯ୍ୟଗଣ ସେମାନଙ୍କୁ 'ଅସୁର' (ବା 'ଅହୁର') ବୋଲି କହୁଥିଲେ। ସେମାନେ କିନ୍ତୁ ନିଜକୁ 'ଅହୁର' କହିଲେ ଦେବତା ବୋଲି ବୁଝୁଥିଲେ ଏବଂ ସେମାନଙ୍କ ଧର୍ମଗ୍ରନ୍ଥ 'ଅହୁର ମଜ୍‌ଦା' ରେ ଅହୁର ଶବ୍ଦ ଦେବତା' ଅର୍ଥରେ ହିଁ ବ୍ୟବହୃତ। ସେହିପରି ଇନ୍ଦୋ-ଇରାନୀୟ ଯୁଗ ବା ୧୫୦୦ ଖ୍ରୀଷ୍ଟପୂର୍ବାବ୍ଦରେ 'ଦୈବ' ଶବ୍ଦଟିର ଅର୍ଥ ଥିଲା 'ଦେବତା'। ସଂସ୍କୃତରେ ଏହି ଅର୍ଥ ଏବେ ବି ଅପରିବର୍ତ୍ତିତ ରହିଛି। କିନ୍ତୁ ଇରାନ୍‌ରେ ଜରଥୁଷ୍ଟ୍ର ଦେବୋପାସନା ବିରୁଦ୍ଧରେ ନିଜ ଧର୍ମ ମତର ପ୍ରଚାର କଲାପରେ 'ଦୈବ' ଶବ୍ଦଟି ବର୍ତ୍ତମାନ 'ଦୈତ୍ୟ' ବା ରାକ୍ଷସ ଅର୍ଥରେ ପ୍ରଚଳିତ। ସେହିପରି ଗ୍ରୀକ୍ ଭାଷାରେ 'ଦେମନ' ଶବ୍ଦର ଅର୍ଥ ଦେବତା, କିନ୍ତୁ ଖ୍ରୀଷ୍ଟଧର୍ମର ପ୍ରଚାରକଙ୍କ ନିକଟରେ ଗ୍ରୀକଙ୍କ ଦେବତା - 'ଦେମନ' ଗୌଣ ହୋଇ ଯିବାରୁ ଇଂରାଜୀ ଭାଷାରେ ଏହି ଦେମନ୍ ବା demon ଦୈତ୍ୟ ଅର୍ଥରେ ବ୍ୟବହୃତ। ତେଣୁ ଦେବତା ଅସୁର, ଅଦିତିଜ ଆଦିତେୟ-ଦିତିଜ ଦୈତ୍ୟ-ସବୁ ଆପେକ୍ଷିକ ସବୁ ମାନସିକ ବିଭାବ ବା ବିଭାଗ-ଗୀତାର ଷୋଡ଼ଶ ଅଧ୍ୟାୟ 'ଦୈବାସୁର ସମ୍ପଦ ବିଭାଗ ଯୋଗ'ରେ ଏହାର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ।

ବୈଦିକ ତତ୍ତ୍ୱଦର୍ଶୀ ଋଷିଗଣ ଦିନରେ ସୂର୍ଯ୍ୟକିରଣରୁ ଆଲୋକ ଓ ଉତ୍ତାପ ରାତିରେ ଚନ୍ଦ୍ରକିରଣରୁ ଆଲୋକ ଓ ଆହ୍ଲାଦ, ଶୀତଦିନେ ଅଗ୍ନିଠାରୁ ଉତ୍ତାପ ପାଇ ତଥା ଦାବାଗ୍ନିର ବିଭୀଷିକା ଦେଖି ସେମାନଙ୍କୁ ତଥା ବୃଷ୍ଟିର ଦେବତା ଇନ୍ଦ୍ର ଓ ବାୟୁର ଦେବତା ମରୁତ୍ ପ୍ରଭୃତିଙ୍କୁ ଦେବତା ଭାବରେ ସ୍ୱୀକାର କଲା ଓ ସେମାନଙ୍କର କାର୍ଯ୍ୟାକାର୍ଯ୍ୟର ସ୍ତବ କଲା। ବହୁ ପରେ 'ଗଣେ ନାରାୟଣେ ରୁଦ୍ରେ ଭାସ୍କରେ ଅମ୍ବିକେ ତଥା, ଭିନ୍ନାଭିନ୍ନ ନକର୍ତ୍ତବ୍ୟମନ୍ୟଥା ପାପଭାକ୍ ଭବେତ୍', କହି ପଞ୍ଚ ଦେବତାଙ୍କ ଉପାସନା ଓ ମାହାତ୍ମ୍ୟ ପ୍ରତିଷ୍ଠା ହେଲା। କିନ୍ତୁ ଜନମନର ଭିନ୍ନତା ନେଇ ଦେବତା-ଧାରଣା ମଧ୍ୟ ବିଭିନ୍ନ ରୂପ ନେଲା। ବହୁ ଦେବତାଙ୍କ ଅବତାରଣା ହେଲା। ବହୁ ଲୋକ ଦେବତା ମନୁଷ୍ୟମନର ଦୁର୍ବଳ ସ୍ଥିତିରେ ପ୍ରବଳ ପ୍ରଭାବ ପକାଇ ପ୍ରତିଷ୍ଠ ହେଲେ - ପୂଜା ପାଇଲେ। ଆଦିମାନବ ଦେବତା ଭାବରେ କାଠଖଣ୍ଡେ ବା ପଥର ଖଣ୍ଡେ ପୂଜା କରୁଥିଲା। କାରଣ ବଣର ଅସହାୟ ପରିବେଶରେ କାଠ ଓ ପଥର ହିଁ ତାର ଥିଲେ ସହାୟକ ଦେବତା ପରେ

ମଣିଷ ନିଜ ରୂପକୁ ଗୁରୁତ୍ୱ ଦେଇ ବହୁ ମୁଣ୍ଡ ଓ ବହୁ ହାତର କଳ୍ପନା କରି ନିଜର ଲୋକୋତ୍ତର ରୂପକୁ ପୂଜା କରିଚି । - ଅରୂପରୁ ରୂପ କଳ୍ପନା କରି ଉଭୟରେ ତାଦାତ୍ମ୍ୟ ଦେଖି ବ୍ରହ୍ମର କଳ୍ପନା କରିଚି । ଅରୂପ କାଠ ପଥର ଓ ରୂପବନ୍ତ ଦେବତା ବିଗ୍ରହ ଭିତରେ ମଣିଷ ଜଳଚର ମତ୍ସ୍ୟ, ଉଭୟଚର କଚ୍ଛପ, ବନଜୀବ ବରାହ ତଥା ବନ୍ୟସିଂହ ଓ ଗ୍ରାମ୍ୟ ନରଙ୍କ ମିଳିତ ବିଗ୍ରହ ନରସିଂହ, ଅନୁନ୍ନତ ନର ବାମନ, ଦୁର୍ଦ୍ଧର୍ଷ ଶସ୍ତ୍ରଧାରୀ ପର୍ଶୁରାମ, ଅସ୍ତ୍ରକୁଶଳ ରାମ, କୃଷିର ପ୍ରତୀକ ହଳଧାରୀ ବଳରାମ, ବୁଦ୍ଧିଜୀବୀ ବୁଦ୍ଧ ବା କୃଷ୍ଣ ଏବଂ ଆଧୁନିକ ଆଣବିକ ଶକ୍ତିଘୋଟକ ଆରୋହଣରେ ନିଜର ଧ୍ୱଂସସାଧନକାରୀ କଳ୍କି - ଆମର ଅବତାର ହୋଇଛନ୍ତି । ଡାରଉଇନ୍ଙ୍କ କ୍ରମବିକାଶ ତତ୍ତ୍ୱର ଅବତାରଣା ଆମର ଅବତାର ଭିତରେ ସୁସ୍ପଷ୍ଟ; କିନ୍ତୁ ମଣିଷର ପୂର୍ବାବସ୍ଥା ମର୍କଟ ଏଥିରେ ସ୍ଥାନ ପାଇ ନାହାନ୍ତି । ମାତ୍ର ମଣିଷ ମର୍କଟର ଚପଳତା, ପ୍ଳବଂଗମତା ବା ପ୍ଳବନ-ଗମ୍ୟତା, ଶାଖାରୁ ଶାଖା ଡେଇଁବା ବା ଶାଖାମୃଗତ୍ୱ ଲକ୍ଷ୍ୟ କରିଚି । ବଣର ସାଥୀ ସେହି ବାନରଟିକୁ ନର ସାଥୀ କରିଚି – ନିଜର କରିନେଇଛି । ତା'ର ହିଁ ସ୍ମୃତି ଆଜି 'ହନୁମାନ'ଙ୍କୁ ଭକ୍ତ ଭାବରେ, ଦେବତା ଭାବରେ ଦେଖୁଚି - ପୂଜା କରୁଚି । ଅନ୍ୟାନ୍ୟ ଦେବତାଙ୍କ ପରି ହନୁମାନଙ୍କ ପୂଜା ହେଉଛି - ତାଙ୍କର ବି ପୂଜକ ଭକ୍ତର ବି ଭକ୍ତ ଅଛନ୍ତି - ପୂଜ୍ୟ ପୂଜାଦ୍ୱାରା କୃତଜ୍ଞତା ଜ୍ଞାପନ ହିଁ ମାନବିକତା । "ଗୁଣଃ ପୂଜାସ୍ଥାନଂ ଗୁଣିଷ୍ଣୁ ନ ଚ ଲିଙ୍ଗଂ ନ ଚ ବୟଃ' – ଗୁଣର ପୂଜା ମଣିଷ ହିଁ କରିଥାଏ, ତେଣୁ ମଣିଷ ପାଖରେ ଗୁଣର ପୂଜା ହିଁ ଦେବତା ପୂଜା ।

ପରମ ରାମଭକ୍ତ ହନୁମାନ ଆମ ନିକଟରେ ଅନନ୍ୟ ନିଷ୍ଠା, ଅପୂର୍ବ ତ୍ୟାଗ, ଅକୁଣ୍ଠ ଆତ୍ମୋତ୍ସର୍ଗ, ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଓ ଅମିତ ପରାକ୍ରମର ପ୍ରତୀକ ଭାବରେ ତଥା ଦାସ୍ୟ ଭକ୍ତିର ଅନୁପମ ବିଗ୍ରହ ଭାବରେ ଦଣ୍ଡାୟମାନ । ତେଣୁ ବାଲ୍ମୀକି ରାମାୟଣ (୭/୩୫/୩)ରେ କୁହାଯାଇଛି - "ଶୌର୍ଯ୍ୟଂ ଦାକ୍ଷ୍ୟଂ ବଳଂ ଧୈର୍ଯ୍ୟଂ ପ୍ରାଜ୍ଞତା ନୟସାଧନଂ, ବିକ୍ରମଶ୍ଚ ପ୍ରଭାବଶ୍ଚ ହନୂମତି କୃତାଳୟାଃ" ଏବଂ ଆନନ୍ଦ ରାମାୟଣ (୮/୧୩/୧୬)ରେ ଅଛି – 'ବୁଦ୍ଧିର୍ବଳଂ ଯଶୋ ଧୈର୍ଯ୍ୟଂ ନିର୍ଭୟତ୍ୱମରୋଗତା, ସୁଦାର୍ଢ୍ୟଂ ବାକ୍‌ସ୍ଫୁରତ୍ୱଂ ଚ ହନୁମତ୍‌ସ୍ମରଣାଭବେତ୍ ।

ହନୁମାନ ଶବ୍ଦଟି ବ୍ୟାକରଣଗତ ବ୍ୟୁତ୍ପତ୍ତିରୁ ଦେଖିଲେ ହିଂସା ଓ ଗତ୍ୟର୍ଥକ୍ 'ହନ୍' ଧାତୁରୁ 'ଉନ' ବା 'ଉ' ପ୍ରତ୍ୟୟ ହେଲେ 'ହନୁ' ଏବଂ ସ୍ତ୍ରୀତ୍ୱ ପକ୍ଷରେ 'ଊଙ୍' ପ୍ରତ୍ୟୟ

ହେଲେ 'ହନୂ' ଶବ୍ଦ ସିଦ୍ଧ ହୁଏ। ଏହି 'ହନୁ ବା ହନୂ' ଯାହାର କିଛି ଅର୍ଥରେ 'ମତୁପ' ପ୍ରତ୍ୟୟ କଲେ ହନୁ (ନୂ) ମତ୍ ବା ହନୁ (ନୁ) ମାନ ଶବ୍ଦ ନିଷ୍ପନ୍ନ ହୁଏ। ହନୁ ଶବ୍ଦଟିର ଅର୍ଥ ମେଦିନୀ କୋଷରେ – 'ହନୁର୍ହଟ୍ଟବିଳାସିନ୍ୟାଂ ମୃତ୍ୟାବସ୍ତ୍ରେ ଗଦେ ସ୍ତ୍ରିୟାଂ,ଦ୍ୱୟୋଃ କପୋଳାବୟବେ' ବୋଲି କୁହାଯାଉଥିବା ଅର୍ଥମାନଙ୍କ ମଧ୍ୟରୁ ହଟ୍ଟବିଳାସିନୀ ଓ କପୋଳାବୟବରେ ଗତି ଏବଂ ମୃତ୍ୟୁ ଓ ଅସ୍ତ୍ରରେ ହିଂସା ଥିବାରୁ ଏମାନଙ୍କୁ ହନୁ କୁହାଯାଇଛି।

ଆମର ହନୁମାନ ମୃତ୍ୟୁ ବା ସଂହାରକର୍ତ୍ତା ଶିବସ୍ୱରୂପ ଏବଂ ଗତିଶୀଳତାର ପ୍ରତୀକ। ଏହାଛଡ଼ା ବ୍ୟାକରଣରେ 'ଗତି'ର ମଧ୍ୟ ତିନୋଟି ଅର୍ଥ ଜ୍ଞାନ, ଗମନ ଓ ପ୍ରାପ୍ତି। ଶିବାବତାର ହନୁମାନ ସର୍ବଜ୍ଞ ଓ ସର୍ବବିଦ୍ୟା ବିଦ୍ୱାନ୍, ସେ ବାୟୁଠାରୁ ଅଧିକ ଗମନଶୀଳ ଏବଂ 'ଅଷ୍ଟସିଦ୍ଧି ନବନିଧି କେ ଦାତା'।

ହନୁମାନଙ୍କ ଜନ୍ମ ସମ୍ବନ୍ଧରେ ପୁରାଣମାନଙ୍କରେ ବିଭିନ୍ନ କୌତୂହଳୋଦ୍ଦୀପକ ବର୍ଣ୍ଣନା ଦେଖିବାକୁ ମିଳେ। ଶିବ ପୁରାଣ ଓ ଶତରୁଦ୍ରସଂହିତା ଅନୁସାରେ ବିଷ୍ଣୁଙ୍କ ମୋହିନୀ ରୂପରେ ଆକୃଷ୍ଟ ଶିବଙ୍କ ସ୍ଖଳିତ ବୀର୍ଯ୍ୟ ସପ୍ତର୍ଷିମାନେ ସଂଗ୍ରହ କରି ଅଞ୍ଜନାଙ୍କ ଗର୍ଭରେ ରଖିବାରୁ ହନୁମାନ ଜନ୍ମ ହେଲେ। ଆନନ୍ଦ ରାମାୟଣ ଅନୁସାରେ ଦଶରଥଙ୍କ ପୁତ୍ରେଷ୍ଟି ଚରୁରୁ କିଛି ଅଂଶ ଗୋଟିଏ ଚିଲ ଧରି ଉଡ଼ିଯାଉଥିବା ବେଳେ ତପସ୍ୟାରତା ଅଞ୍ଜନାଙ୍କ ଆଙ୍ଗୁଠିରେ ଲାଗିଲା ଏବଂ ସେ ତାହା ଖାଇ ଗର୍ଭଧାରଣ କରିବାରୁ ହନୁମାନ ଜନ୍ମ ହେଲେ। ଭବିଷ୍ୟପୁରାଣର ପ୍ରତିସର୍ଗ ପର୍ବ ଅନୁସାରେ ଶିବଙ୍କ ରୁଦ୍ରରୂପୀ କେଶରୀ ବାନରର ଶରୀରରେ ପ୍ରବେଶ କରି ଅଞ୍ଜନାଙ୍କୁ ରମଣ କଲାପରେ ବାୟୁଦେବତା ପୁଣି ଅଞ୍ଜନାଙ୍କ ସହ ରମଣ କରିବାରୁ ଉଭୟଙ୍କ ଔରସରୁ ହନୁମାନ ଜନ୍ମ ହେଲେ। କିମ୍ବା ରାମାୟଣ ଅନୁସାରେ ଶିବଙ୍କ ଔରସଜ ସନ୍ତାନ ଅଞ୍ଜନାଙ୍କ ଗର୍ଭରେ ଥିବା କଥା ନାରଦଙ୍କଠାରୁ ଜାଣିବାକୁ ପାଇ ବାଳି ନିଜର ପ୍ରତିପତ୍ତି କ୍ଷୟ ସମ୍ଭାବନାରେ ପଞ୍ଚଧାତୁ (ସୁନା, ଲୁହା, ତମ୍ବା, ଜିଙ୍କ ଓ ଟିଣ) ର ଦ୍ରବ୍ୟ ଗର୍ଭସ୍ରାବ ଉଦ୍ଦେଶ୍ୟରେ ଅଞ୍ଜନାଙ୍କୁ ପିଆଇ ଦେଲେ। ତାହା କିନ୍ତୁ ହନୁମାନଙ୍କ କ୍ଷତିକାରକ ଦୂଷଣ ନହୋଇ କୁଣ୍ଡଳ ଆକାରରେ ଭୂଷଣ ହେଲା।

ହନୁମାନଙ୍କର ଜନ୍ମ ବାୟୁପୁରାଣ ଅନୁସାରେ 'ଆଶ୍ୱିନସ୍ୟାସିତେ ପକ୍ଷେ ସ୍ୱାତ୍ୟାଂ ଭୌମେ ଚ ମାରୁତିଃ, ମେଷଲଗ୍ନେଽଞ୍ଜନାଗଭତ୍ ସ୍ୱୟଂ ଜାତୋ ହରଃ ଶିବଃ' – ଆଶ୍ୱିନ

କୃଷ୍ଣପକ୍ଷ ମଙ୍ଗଳବାର ସ୍ୱାତୀ ନକ୍ଷତ୍ରରେ ହୋଇଥିଲା ବୋଲି ମଧ୍ୟ ମତାନ୍ତର ଦେଖିବାକୁ ମିଳେ – 'ଚୈତ୍ରେମାସି ସିତେ ପକ୍ଷେ ହରେର୍ଦିନେ ମଘାଭିଧେ ନକ୍ଷତ୍ରେ ଚ ସମୁତ୍ପନ୍ନୋ ହନୁମାନ୍ ରିପୁସୂଦନଃ'। ମାତ୍ର ମଦନମୋହନ ମାଳବ୍ୟଙ୍କ ପ୍ରବର୍ତ୍ତିତ ବିଶ୍ୱପଞ୍ଜାଙ୍ଗରେ 'କାର୍ତ୍ତିକ କୃଷ୍ଣପକ୍ଷ ନରକଚତୁର୍ଦ୍ଦଶୀ ମଙ୍ଗଳବାର ସନ୍ଧ୍ୟାରେ ମେଷ ଲଗ୍ନରେ ହନୁମାନଙ୍କର ଜନ୍ମ ବୋଲି ଉଲ୍ଲେଖ ଅଛି। ଏହାଛଡ଼ା ଅନ୍ୟ ମତରେ – 'ମହାଚୈତ୍ରୀପୂର୍ଣ୍ଣିମାୟାଂ ସମୁତ୍ପନ୍ନୋଽଞ୍ଜନୀସୁତଃ, ବଦନ୍ତି କଳ୍ପଭେଦେନ ବୁଧା ଇତ୍ୟାଦି କେଚନ' - ମହାଚୈତ୍ର ପୂର୍ଣ୍ଣିମା ଦିନ ହନୁମାନ ଜନ୍ମ ହୋଇଥିଲେ। ଓଡ଼ିଶାରେ ଜଗନ୍ନାଥ ମନ୍ଦିରରେ କିନ୍ତୁ ହନୁମାନ ଜନ୍ମ ମେଷ ସଂକ୍ରାନ୍ତି ଦିନ ପାଳନ କରାଯାଇଥାଏ। ବୋଧହୁଏ ରାଶିଚକ୍ରର ପ୍ରଥମ ରାଶିର ପ୍ରଥମ ଅଂଶରେ ଉଦିତ ସୂର୍ଯ୍ୟଙ୍କୁ ସଦ୍ୟଜାତ ହନୁମାନ ଗ୍ରାସ କରିଥିଲେ ବୋଲି – ଏହି ଦିବସଟି ଆମ ମତରେ 'ହନୁମାନ ଜୟନ୍ତୀ'।

ହନୁମାନ ଜନ୍ମହେଲା ପରେ ବାଳରବିଙ୍କୁ ପକ୍ୱବିମ୍ବ ଜ୍ଞାନରେ ଭକ୍ଷଣ କରିବାକୁ ଯିବାରୁ ଇନ୍ଦ୍ରଙ୍କ ବଜ୍ରାଘାତରେ ଆହତ ହୋଇଥିଲେ। ଏଥିରେ ପିତା ବାୟୁଦେବତା କ୍ଷୁବ୍ଧ ହେବାରୁ ହନୁମାନ ସଂଜ୍ଞା ଫେରି ପାଇବା ସଙ୍ଗେ ସଙ୍ଗେ ସକଳ ଦେବତାଙ୍କଠାରୁ କଲ୍ୟାଣ ଓ ବର ପାଇଥିଲେ। ଶିବ ଶକ୍ତିରେ ବଳବାନ୍ ହନୁମାନ ସୂର୍ଯ୍ୟଙ୍କଠାରୁ ବିଦ୍ୟା ଶିକ୍ଷା କରିବା ସକାଶେ ପ୍ରାର୍ଥନା କରିଥିଲେ। ସୂର୍ଯ୍ୟ କିନ୍ତୁ ବାଳଖିଲ୍ୟ ଋଷିମାନଙ୍କ ସହ ଏକାଠି ରଥରେ ବସାଇ ହନୁମାନଙ୍କୁ ବିଦ୍ୟାଶିକ୍ଷା ଦେବା ସକାଶେ ଅସମ୍ମତ ହେବାରୁ ହନୁମାନ ସୂର୍ଯ୍ୟଙ୍କ ସମ୍ମୁଖରେ ଆକାଶ ମାର୍ଗରେ ଗତି କରି ଷାଠିଏ ଘଣ୍ଟାରେ ସକଳ ଶାସ୍ତ୍ର ଆୟତ୍ତ କରିଥିଲେ। ସୂର୍ଯ୍ୟଙ୍କୁ ଗୁରୁଦକ୍ଷିଣା ମାଗିବା ପାଇଁ ବହୁ ଅନୁରୋଧ କରିବାରୁ ସୂର୍ଯ୍ୟ ବାଳିକର୍ତ୍ତୃକ ଉତ୍ପୀଡ଼ିତ ତାଙ୍କ ପୁତ୍ର ସୁଗ୍ରୀବଙ୍କ ସହାୟକ ଭାବରେ ରହିବା ସକାଶେ କହିଥିଲେ ଏବଂ ତଦ୍‌ବଧି ହନୁମାନ ସୁଗ୍ରୀବଙ୍କ ସହଚର ହୋଇ ଶ୍ରୀରାମଙ୍କ ଦ୍ୱାରା ବାଳିବଧ କରାଇ ପରେ ଶ୍ରୀରାମଙ୍କ ଅନୁଚର ହୋଇଥିଲେ।

ହନୁମାନଙ୍କ କର୍ତ୍ତୃକ ସମୁଦ୍ରଲଙ୍ଘନ, ଅଶୋକବନରେ ସୀତାଠାବ, ରାବଣର ପୁତ୍ର ଅକ୍ଷୟକୁମାର ସହ ପଞ୍ଚସେନାପତିଙ୍କ ବଧ, ଲଙ୍କାପୋଡ଼ି, ରାମେଶ୍ୱରର ଶିବଲିଙ୍ଗ ପ୍ରତିଷ୍ଠା, ସେତୁବନ୍ଧ, ଲକ୍ଷ୍ମଣ ଶକ୍ତିଭେଦରେ ଗନ୍ଧମାର୍ଦନ ପର୍ବତ ଆନୟନ ପ୍ରଭୃତି କୃତୀତ୍ୱର ସହ କରି ଯଶସ୍ୱୀ ହୋଇଥିଲେ। ସେ ଥିଲେ ରାମସର୍ବସ୍ୱ। ବାଲ୍ମୀକି ଆଶ୍ରମରେ ମା ସୀତାଙ୍କ

ନିକଟରେ ବର୍ଦ୍ଧିତ ରାମସୁତ ଲବକୁଶଙ୍କ ନିକଟରେ ହିଁ ସେ ପରାଜୟ ସ୍ୱୀକାର କରିଥିଲେ। ଦ୍ୱାପର ଯୁଗରେ ତାଙ୍କ ଭାଇ ପବନସୁତ ମହାବଳୀ ଭୀମ ତାଙ୍କର ଲାଙ୍ଗୁଳଟିକୁ ଟେକିବାରେ ମଧ୍ୟ ସମର୍ଥ ହୋଇ ନଥିଲେ। ସଖା ଅର୍ଜୁନର ମହତ୍ତ୍ୱ ରଖିବାକୁ ଭଗବାନ ଶ୍ରୀକୃଷ୍ଣ ଶରସେତୁକୁ କୂର୍ମରୂପରେ ଧରି ରଖି ଅର୍ଜୁନଙ୍କ ରଥ ପତାକାରେ ମାରୁତିଙ୍କୁ ସ୍ଥାନ ଦେଇଥିଲେ। ପ୍ରଭୁ ରାମଚନ୍ଦ୍ରଙ୍କ ରୂପ ନଧରିଲେ ସେ ଭଗବାନ ଶ୍ରୀକୃଷ୍ଣଙ୍କ ଆଦେଶ ମଧ୍ୟ ମାନୁନଥିଲେ। ତାଙ୍କ ନିକଟରେ 'ରାମ ଏବ ପରଂବ୍ରହ୍ମ ରାମ ଏବ ପରଂ ତପଃ, ରାମ ଏବଂ ପରଂ ତତ୍ତ୍ୱଂ, ଶ୍ରୀରାମୋ ବ୍ରହ୍ମତାରକମ୍ (ଶ୍ରୀରାମ ରହସ୍ୟୋପନିଷଦ୍)' ଥିଲେ। ଅଟଳ ଏକନିଷ୍ଠ ଦାସ୍ୟଭକ୍ତି ବଳରେ ସେ ସର୍ବଜୟୀ ମହାବଳୀ ହୋଇପାରିଥିଲେ। 'ଅଶ୍ୱତ୍‌ଥାମା ବଳିର୍ବ୍ୟାସୋ ହନୁମାଂଶ୍ଚ ବିଭୀଷଣଃ, କୃପଃ ପରଶୁରାମଶ୍ଚ – ସପ୍ତୈତେ ଚିର ଜୀବନଃ' ମଧ୍ୟରେ ବର୍ତ୍ତମାନ ମଧ୍ୟ ରାମ କଥା ଯେଉଁଠି ହନୁମାନ ସେଇଠି। 'ଯତ୍ର ଯତ୍ର ରଘୁନାଥ କୀର୍ତ୍ତନଂ ତତ୍ର ତତ୍ର କୃତ ମସ୍ତକାଞ୍ଜଳିଂ ବାଷ୍ପବାରି ପରିପୂର୍ଣ୍ଣ ଲୋଚନଂ ମାରୁତିଂ ନମତ ରାକ୍ଷସାନ୍ତକଂ – ବୋଲି ଲୋକ ବିଶ୍ୱାସ ରହିଛି। ଅନେକ ହନୁମାନ ସାଧକ ତାଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରି ତାଙ୍କର ଅନୁଗ୍ରହ ଲାଭ କରୁଛନ୍ତି। ବିପତ୍ତିଖଣ୍ଡନରେ, ରୋଗ ନିବାରଣରେ, ଭୟନାଶରେ ଓ ଶତ୍ରୁଦ୍ରାବଣରେ ହନୁମାନ ସାଧନାର ତୁଳନା ନାହିଁ।

ହନୁମାନ ରାମାୟଣକାରମାନଙ୍କ ହାତରେ ଶ୍ରୀରାମଦୂତ ତଥା ଦାସ୍ୟଭକ୍ତିର ଅନୁପମ ଦୃଷ୍ଟାନ୍ତ ଭାବେ ଚିତ୍ରିତ ହୋଇଛନ୍ତି; ମାତ୍ର ଦେବତା କୋଟିରେ ଆସୀନ ହୋଇନାହାନ୍ତି। ବିଷ୍ଣୁ ନବଧା ଭକ୍ତିର ସ୍ମରଣୀୟ ଭକ୍ତମାନଙ୍କ ମଧ୍ୟରୁ ଶ୍ରବଣରେ ପରୀକ୍ଷିତ, କୀର୍ତ୍ତନରେ ଶୁକ, ସ୍ମରଣରେ ପ୍ରହ୍ଲାଦ, ପାଦସେବାରେ ଲକ୍ଷ୍ମୀ, ପୂଜାରେ ପୃଥୁ, ବନ୍ଦନାରେ ଅକ୍ରୁର, ଦାସ୍ୟରେ ହନୁମାନ, ସଖ୍ୟରେ ଅର୍ଜୁନ, ସର୍ବାତ୍ମାନିବେଦନରେ ବଳି ପ୍ରସିଦ୍ଧ। ଏମାନଙ୍କ ମଧ୍ୟରୁ ଲକ୍ଷ୍ମୀ କେବଳ ଦେବତା ଭାବରେ ସ୍ୱୀକୃତ। କିନ୍ତୁ ରାମାୟଣର ହନୁମାନ ନିଜର ପରିଚୟ ଦେଇ ଭଗବାନ ରାମଚନ୍ଦ୍ରଙ୍କୁ କହିଛନ୍ତି – 'ଦେହଦୃଷ୍ଟ୍ୟା ତୁ ଦାସୋଽହଂ ଜୀବଦୃଷ୍ଟ୍ୟା ତ୍ୱଦଂଶକଃ, ଆତ୍ମଦୃଷ୍ଟ୍ୟା ତ୍ୱମେବାହମିତି ମେ ନିଶ୍ଚିତା ମତିଃ।' ଆତ୍ମଜ୍ଞାନୀ ନିକଟରେ ଭକ୍ତ ଓ ଭଗବାନ ମଧ୍ୟରେ ଭେଦ ନାହିଁ। ତନ୍ତ୍ର ତେଣୁ ବାୟୁ ପୁରାଣ ବଚନ 'ଅଞ୍ଜନାଗର୍ଭାତ୍ ସ୍ୱୟଂଜାତୋ ହରଃ ଶିବଃ' ଅନୁସାରେ ହନୁମାନଙ୍କୁ ଶିବରୂପ-ରୁଦ୍ରାବତାର ଭାବରେ ସ୍ୱୀକାର କରିଚି। ହନୁମାନ ସାଧନା ତେଣୁ ଶିବଙ୍କ ମୁଖକୁ ନେଇ ଏକ ମୁଖ, ପଞ୍ଚମୁଖ ଓ

ଏକାଦଶରୁଦ୍ର ଭେଦରେ ତିନି ପ୍ରକାର। ଶ୍ରୀବିଦ୍ୟାର୍ଣ୍ଣବତନ୍ତ୍ର (୩୩/୮୯) ରେ ପଞ୍ଚମୁଖ ହନୁମାନଙ୍କ ଦଶ ଆୟୁଧର ବର୍ଣ୍ଣନା କରାଯାଇଛି। – 'ଖଡ଼୍‌ଗ ତ୍ରିଶୂଳଂ ଖଟ୍ୱାଙ୍ଗଂ ପାଶମଙ୍କୁଶପର୍ବତମ୍, ଧ୍ରୁବମୁଷ୍ଟିଗଦାମୁଣ୍ଡଂ ଦଶିଭିର୍ମୁନିପୁଙ୍ଗବ; ଏତାନ୍ୟାୟୁଧଜାଲାନି ଧାରୟନ୍ତଂ ଯଜାମହେ'। ପଞ୍ଚମୁଖ ହନୁମାନଙ୍କର ପୂର୍ବଦିଗରେ କୋଟିସୂର୍ଯ୍ୟପ୍ରଭ ବାନର ମୁଖ, ଦକ୍ଷିଣରେ ନରସିଂହମୁଖ, ପଶ୍ଚିମରେ ଗରୁଡ଼ ମୁଖ, ଉତ୍ତରରେ ନୀଳାଭ ଶୁକର ମୁଖ, ଉର୍ଦ୍ଧ୍ୱରେ ଅଶ୍ୱମୁଖ ଥିବା କୁହାଯାଇଛି। ତନ୍ତ୍ରମାର୍ଗରେ ହନୁମତ୍ସାଧନା ଆଶୁଫଳପ୍ରସୂ ବୋଲି ତଦ୍‌ବିଦ୍‌ମାନଙ୍କର ମତ। ଶତ୍ରୁ ସଂକଟ ନିବାରଣ ସକାଶେ 'ଓଁ ପୂର୍ବ କପିମୁଖାୟ ପଞ୍ଚମୁଖ ହନୁମତେ ଟଂ ଟଂ ଟଂ ଟଂ ଟଂ ସକଳଶତ୍ରୁ ସଂହାରଣାୟ ସ୍ୱାହା' ୧୫୦୦ ଥର ଜପ କଲେ ଶତ୍ରୁବାଧା ନିଶ୍ଚୟ ନିବାରଣ ହେବ। ପ୍ରେତବାଧା ନିବାରଣ ସକାଶେ 'ଓଁ ଦକ୍ଷିଣମୁଖାୟ ପଞ୍ଚମୁଖହନୁମତେ କରାଳବଦନାୟ ନାରସିଂହାୟ ଓଁ ହ୍ରାଂ ହ୍ରାଂ ହ୍ରୁଂ, ହ୍ରୈଂ, ହ୍ରଃ ସକଳଭୂତପ୍ରେତଦମନାୟ ସ୍ୱାହା' ଦଶ ହଜାର ଜପକରି ଅଷ୍ଟଗନ୍ଧରେ ହୋମ କଲେ ସିଦ୍ଧି ମିଳେ। ସେହିପରି ଦୀପାବଳୀ ଦିନ ଅର୍ଦ୍ଧରାତ୍ରରେ ଘିଅଦୀପ ଜାଳି ହନୁମାନଙ୍କ ଆଗରେ 'ଓଁ ପଶ୍ଚିମମୁଖାୟ ଗରୁଡ଼ାନନାୟ ପଞ୍ଚମୁଖହନୁମତେ ମଂ ମଂ ମଂ ମଂ ମଂ ସକଳବିଷହରାୟ ସ୍ୱାହା' ମନ୍ତ୍ର ଦଶହଜାର ଜପ କଲେ ସିଦ୍ଧ ହୁଏ। କୌଣସି ବିଲ୍ୱବୃକ୍ଷ ମୂଳରେ 'ଓଁ ନମୋ ହନୁମତେ ରୁଦ୍ରାବତାରାୟ ପଞ୍ଚବଦନାୟ ଉତ୍ତର ମୁଖେ ଆଦିବରାହାୟ ସକଳସମ୍ପତ୍‌କାରାୟ ରାମଦୂତାୟ ସ୍ୱାହା' ମନ୍ତ୍ର ଅର୍ଦ୍ଧଲକ୍ଷ ଜପ କଲେ ସଂପଦ୍ ବୃଦ୍ଧି ହୁଏ। ସେହିପରି ବଶୀକରଣ ସକାଶେ 'ଓଁ ନମୋ ହନୁମତେ ରୁଦ୍ରାବତାରାୟ ଉର୍ଦ୍ଧ୍ୱମୁଖେ ହୟଗ୍ରୀବାୟ ସକଳଜନବଶୀକରଣାୟ ରାମଦୂତାୟ ସ୍ୱାହା' ମନ୍ତ୍ର ଅର୍ଦ୍ଧ ନିଶୀଥରେ ଏକ ଲକ୍ଷ ଜପ କରିବାକୁ ହୁଏ। ସାଧାରଣରେ 'ଓଁ ହଂ ରୁଦ୍ରାୟ ହନୁମତେ ନମଃ' – ମନ୍ତ୍ରର ବାରମ୍ବାର ଜପ ସକଳ କାର୍ଯ୍ୟ ସିଦ୍ଧି ନିଶ୍ଚିତ ଭାବରେ କରିଥାଏ । ବାୟୁବୀଜପୁଟିତ ଏହା ଏକ ପରୀକ୍ଷିତ ମନ୍ତ୍ର। ଅନ୍ୟ ଏକ ତନ୍ତ୍ରସିଦ୍ଧ ସକଳାଭୀଷ୍ଟପ୍ରଦ ସପ୍ତଷଷ୍ଟ୍ୟକ୍ଷରାତ୍ମକ ମନ୍ତ୍ର ହେଉଛି - 'ଓଁ ଐଂ ହ୍ରୀଂ ହନୁମତେ ରାମଦୂତାୟ ଲଙ୍କାବିଧ୍ୱଂସନାୟ ଅଞ୍ଜନୀଗର୍ଭସମ୍ଭୂତାୟ ଶାକିନୀଡାକିନୀବିଧ୍ୱଂସନାୟ କିଲି-କିଲି-ବୁ-ବୁ-କାରେଣ ବିଭୀଷଣାୟ ହନୁମଦ୍ଦେବାୟ ଓଁ ହ୍ରୀଂ ଶ୍ରୀଂ ହ୍ରୁଂ ହ୍ରାଂ ଫଟ୍ ସ୍ୱାହା।" ହନୁମାନ ନିଜ ଭକ୍ତଙ୍କ ଉପରେ ଯେପରି ପ୍ରୀତ ରାମତାରକ ମନ୍ତ୍ରସାଧନ ଭକ୍ତଙ୍କ ଉପରେ ମଧ୍ୟ ସେପରି ପ୍ରୀତ। ସଂକଟମୋଚନ ହନୁମାନ ସ୍ତୋତ୍ର, ହନୁମତ ସହସ୍ରନାମ, ହନୁମାନ ଚାଳିଶା ପ୍ରଭୃତିର ପାଠ ପ୍ରତ୍ୟକ୍ଷ ଫଳପ୍ରଦ।

ହନୁମାନ ନିଜେ ଥିଲେ ଲେଖକ। ରାମାୟଣ ଘଟଣାବଳୀର ପ୍ରତ୍ୟକ୍ଷଦ୍ରଷ୍ଟା ହନୁମାନ ନିଜ ନଖରେ ପର୍ବତଗାତ୍ରରେ ରାମକଥା ଉଟଙ୍କିତ କରିଯାଇଥିଲେ। ଦିନେ ତାଙ୍କ ସରସ ରଚନା ଶୁଣି ବାଲ୍ମୀକି ନିଜ ରାମାୟଣର ଲୋକପ୍ରିୟତା ହ୍ରାସ ଆଶଙ୍କାରେ ବିଷର୍ଣ୍ଣ ହେଲେ। ଭକ୍ତ ହନୁମାନ ରାମକଥାର ଆଦିକବି ବାଲ୍ମୀକିଙ୍କ ମନରୁ ଦୁଃଖ ଅପନୋଦନ ସକାଶେ ନିଜ ରାମାୟଣ ଲେଖାକୁ ସମୁଦ୍ରକୁ ଫିଙ୍ଗି ଦେଲେ। ପରେ ତା'ର କିୟଦଂଶ ସଂକଳିତ ହୋଇ 'ହନୁମନ୍ନାଟକ ବା ମହାନାଟକ' ନାମରେ ପ୍ରସିଦ୍ଧିଲାଭ କରିଛି। ଜ୍ୟୋତିଷରେ ମଧ୍ୟ ପ୍ରଶ୍ନବିଚାରରେ 'ହନୁମାନ ପ୍ରଶ୍ନ' ର ଅବ୍ୟର୍ଥତା ଅନେକଙ୍କୁ ଚକିତ କରିଥାଏ।



* ଶ୍ରୀ ହନୁମତେ ନମଃ *

# ଶ୍ରୀହନୁମାନ ଚାଳିସା

- ଦୋହା -

ଶ୍ରୀଗୁରୁ ଚରନ ସରୋଜ ରଜ ନିଜ ମନୁ ମୁକୁରୁ ସୁଧାରି ।
ବରନଉଁ ରଘୁବର ବିମଲ ଜସୁ ଜୋ ଦାୟକୁ ଫଲ ଚାରି ।
ବୁଦ୍ଧିହୀନ ତନୁ ଜାନିକେ, ସୁମିରୌଂ ପଵନକୁମାର ।
ବଲ ବୁଧି ବିଦ୍ୟା ଦେହୁ ମୋହିଂ, ହରହୁ କଲେସ ବିକାର ।।

- ଚୌପାଈ -

ଜୟ ହନୁମାନ ଜ୍ଞାନ ଗୁନ ସାଗର । ଜୟ କପୀସ ତିହୁଁ ଲୋକ ଉଜାଗର ।।
ରାମ ଦୂତ ଅତୁଲିତ ବଲ ଧାମା । ଅଞ୍ଜନିପୁତ୍ର ପଵନସୁତ ନାମା ।।
ମହାବୀର ବିକ୍ରମ ବଜରଂଗୀ । କୁମତି ନିଵାର ସୁମତି କେ ସଂଗୀ ।।
କଂଚନ ବରନ ବିରାଜ ସୁବେସା । କାନନ କୁଣ୍ଡଲ କୁଂଚିତ କେସା ।।
ହାଥ ବଜ୍ର ଔ ଧ୍ୱଜା ବିରାଜୈ । କାଁଧେ ମୂଁଜ ଜନେଉ ସାଜୈ ।।
ସଂକର ସୁଵନ କେସରୀନଂଦନ । ତେଜ ପ୍ରତାପ ମହା ଜଗବଂଦନ ।।
ବିଦ୍ୟାଵାନ ଗୁନୀ ଅତି ଚାତୁର । ରାମ କାଜ କରିବେ କୋ ଆତୁର ।।
ପ୍ରଭୁ ଚରିତ୍ର ସୁନିବେ କୋ ରସିୟା । ରାମ ଲଖନ ସୀତା ମନ ବସିୟା ।।
ସୂକ୍ଷ୍ମ ରୂପ ଧରି ସିୟହିଂ ଦିଖାଵା । ବିକଟ ରୂପ ଧରି ଲଂକ ଜରାଵା ।।
ଭୀମ ରୂପ ଧରି ଅସୁର ସଂହାରେ । ରାମଚନ୍ଦ୍ର କେ କାଜ ସଁଵାରେ ।।
ଲାୟ ସଜୀଵନ ଲଖନ ଜିୟାୟେ । ଶ୍ରୀ ରଘୁବୀର ହରଷି ଉର ଲାୟେ ।।
ରଘୁପତି କୀନ୍‌ହୀ ବହୁତ ବଡ଼ାଈ । ତୁମ ମମ ପ୍ରିୟ ଭରତହି ସମ ଭାଈ ।।
ସହସ ବଦନ ତୁମ୍‌ହରୋ ଜସ ଗାଵୈଂ । ଅସ କହି ଶ୍ରୀପତି କଣ୍ଠ ଲଗାଵୈଂ ।।
ସନକାଦିକ ବ୍ରହ୍ମାଦି ମୁନୀସା । ନାରଦ ସାରଦ ସହିତ ଅହୀସା ।।
ଜମ କୁବେର ଦିଗପାଲ ଜହାଁ ତେ । କବି କୋବିଦ କହି ସକେ କହାଁ ତେ ।।
ତୁମ ଉପକାର ସୁଗ୍ରୀଵହିଂ କୀହ୍ନା । ରାମ ମିଲାୟ ରାଜ ପଦ ଦୀନ୍‌ହା ।।

| | | | |
|---|---|---|---|
| ତମ୍ହରୋ ମନ୍ତ୍ର ବିଭୀଷନ ମାନା | । | ଲଂକେଶ୍ୱର ଭଏ ସବ ଜଗ ଜାନା | ।। |
| ଜୁଗ ସହସ୍ର ଜୋଜନ ପର ଭାନୂ | । | ଲୀଲ୍ୟୋ ତାହି ମଧୁର ଫଲ ଜାନ | ।। |
| ପ୍ରଭୁ ମୁଦ୍ରିକା ମେଲି ମୁଖ ମାହୀଂ | । | ଜଲଧ ଲାଁଘି ଗୟେ ଅଚରଜ ନାହୀଂ | ।। |
| ଦୁର୍ଗମ କାଜ ଜଗତ କେ ଜେତେ | । | ସୁଗମ ଅନୁଗ୍ରହ ତୁମ୍ ତେତେ | ।। |
| ରାମ ଦୁଆରେ ତୁମ ରଖୱାରେ | । | ହୋତ ନ ଆଜ୍ଞା ବିନୁ ପୈସାରେ | ।। |
| ସବ ସୁଖ ଲହୈ ତୁମ୍ହାରୀ ସରନା | । | ତୁମ ରଛକ କାହୂ କୋ ଡର ନା | ।। |
| ଆପନ ତେଜ ସମ୍ହାରୋ ଆପୈ | । | ତୀନୋଂ ଲୋକ ହାଁକ ତେ କାଁପେ | ।। |
| ଭୂତ ପିସାଚ ନିକଟ ନହିଂ ଆୱୈ | । | ମହାବୀର ଜବ ନାମ ସୁନାୱୈ । | ।। |
| ନାସୈ ରୋଗ ହରୈ ସବ ପୀରା | । | ଜପତ ନିରଂତର ହନୁମତ ବୀରା | ।। |
| ସଂକଟ ତେଂ ହନୁମାନ ଛୁଡ଼ାୱୈ | । | ମନ କ୍ରମ ବଚନ ଧ୍ୟାନ ଜୋ ଲାୱେ | ।। |
| ସବ ପର ରାମ ତପସ୍ୱୀ ରାଜା | । | ତିନ କେ କାଜ ସକଲ ତୁମ ସାଜା | ।। |
| ଔର ମନୋରଥ ଜୋ କୋଇ ଲାୱେ | । | ସୋଇ ଅମିତ ଜୀୱନ ଫଲ ପାୱୈ | ।। |
| ଚାରୋଂ ଜୁଗ ପରତାପ ତୁମ୍ହାରା | । | ହୈ ପରସିଦ୍ଧ ଜଗତ ଉଜିୟାରା | ।। |
| ସାଧୁ ସଂତ କେ ତୁମ ରଖୱାରେ | । | ଅସୁର ନିକଂଦନ ରାମ ଦୁଲାରେ | ।। |
| ଅଷ୍ଟ ସିଦ୍ଧି ନୌ ନିଧି କେ ଦାତା | । | ଅସ ବର ଦୀନ ଜାନକୀ ମାତା | ।। |
| ରାମ ରସାୟନ ତୁମ୍ହରେ ପାସା | । | ସଦା ରହୋ ରଘୁପତି କେ ଦାସା | ।। |
| ତମ୍ହରେ ଭଜନ ରାମ କୋ ପାୱୈ | । | ଜନମ ଜନମ କେ ଦୁଖ ବିସରାୱେ | ।। |
| ଅଂତକାଲ ରଘୁବର ପୁର ଜାଈ | । | ଜହାଁ ଜନ୍ମ ହରି-ଭକ୍ତ କହାଈ | ।। |
| ଔର ଦେୱତା ଚିତ ନ ଧରଈ | । | ହନୁମତ ସେଇ ସର୍ବ ସୁଖ କରଈ | ।। |
| ସଂକଟ କଟୈ ମିଟୈ ସବ ପୀରା | । | ଜୋ ସୁମିରୈ ହନୁମତ ବଲବୀରା | ।। |
| ଜୈ ଜୈ ଜୈ ହନୁମାନ ଗୋସାଇଁ | । | କୃପା କରହୁ ଗୁରୁ ଦେୱ କୀ ନାଇଁ | ।। |
| ଜୋ ସତ ବାର ପାଠ କର କୋଇ | । | ଛୂଟହି ବନ୍ଦି ମହା ସୁଖ ହୋଇ | ।। |
| ଜୋ ୟହ ପଢ଼ୈ ହନୁମାନ ଚାଲୀସା | । | ହୋୟ ସିଦ୍ଧି ସାଖି ଗୌରୀସା | ।। |
| ତୁଲସୀଦାସ ସଦା ହରି ଚେରା | । | କୀଜୈ ନାଥ ହୃଦୟ ମହଁ ଡେରା | ।। |

## - ଦୋହା -

ପୱନତନୟ ସଂକଟ ହରନ, ମଂଗଳ ମୂରତି ରୂପ ।
ରାମ ଲଖନ ସୀତା ସହିତ, ହୃଦୟ ବସହୁ ସୁର ଭୂପ ।।

# ସଂକଟମୋଚନ ହନୁମାନାଷ୍ଟକ

ବାଲ ସମୟ ରବି ଭକ୍ଷି ଲିୟୋ ତବ । ତୀନହୁଁ ଲୋକ ଭୟୋ ଅଂଧିୟାରୋ ॥
ତାହି ସୋଂ ତ୍ରାସ ଭୟୋ ଜଗ କୋ । ୟହ ସଂକଟ କାହୁ ସୋଂ ଜାତ ନ ଟାରୋ ॥
ଦେଓ୍ୱନ ଆନି କରୀ ବିନତୀ ତବ । ଛାଁଡ଼ି ଦିୟୋ ରବି କଷ୍ଟ ନିଓ୍ୱାରୋ ॥
କୋ ନହିଁ ଜାନତ ହୈ ଜଗମେଂ କପି । ସଂକଟମୋଚନ ନାମ ତିହାରୋ ।୧।

ବାଲି କୀ ତ୍ରାସ କପୀସ ବସୈ ଗିରି । ଜାତ ମହାପ୍ରଭୁ ପନ୍ଥ ନିହାରୋ ॥
ଚୌଂକି ମହା ମୁନି ସାପ ଦିୟୋ ତବ । ଚାହିୟ କୌନ ବିଚାର ବିଚାରୋ ॥
କୈ ଦ୍ୱିଜ ରୂପ ଲିଓ୍ୱାୟ ମହାପ୍ରଭୁ । ସୋ ତୁମ ଦାସ କେ ସୋକ ନିଓ୍ୱାରୋ ।କୋ ॥
କୋ ନହିଁ ଜାନତ ହୈ ଜଗମେଂ କପି । ସଂକଟମୋଚନ ନାମ ତିହାରୋ ।୨।

ଅଁଗଦ କେ ସଁଗ ଲେନ ଗୟେ ସିୟ । ଖୋଜ କପୀସ ୟହ ବୈନ ଉଚାରୋ ॥
ଜୀଓ୍ୱତ ନା ବଚିହୌ ହମ ସୋଂ ଜୁ । ବିନା ସୁଧି ଲାୟେ ଇହାଁ ପଗୁ ଧାରୋ ॥
ହେରି ଥକେ ତଟ ସିନ୍ଧୁ ସବୈ ତବ ଲାୟ । ସିୟା-ସୁଧି ପ୍ରାନ ଉବାରୋ ॥
କୋ ନହିଁ ଜାନତ ହୈ ଜଗମେଂ କପି । ସଂକଟମୋଚନ ନାମ ତିହାରୋ ।୩।

ରାଓ୍ୱନ ତ୍ରାସ ଦଈ ସିୟ କୋ ସବ । ରାକ୍ଷସି ସୋଂ କହି ସୋକ ନିଓ୍ୱାରୋ ॥
ତାହି ସମୟ ହନୁମାନ ମହାପ୍ରଭୁ । ଜାୟ ମହା ରଜନୀଚର ମାରୋ ॥
ଚାହତ ସୀୟ ଅଶୋକ ସୋଂ ଆଗି ସୁ । ଦୈ ପ୍ରଭୁ ମୁଦ୍ରିକା ସୋକ ନିଓ୍ୱାରୋ ॥
କୋ ନହିଁ ଜାନତ ହୈ ଜଗମେଂ କପି । ସଂକଟମୋଚନ ନାମ ତିହାରୋ ।୪।

ବାନ ଲଗ୍ୟୋ ଉର ଲଛିମନ କେ ତବ । ପ୍ରାନ ତଜେ ସୁତ ରାଓ୍ୱନ ମାରୋ ॥
ଲୈ ଗୃହ ବୈଦ୍ୟ ସୁଷେନ ସମେତ । ତବୈ ଗିରି ଦ୍ରୋନ ସୁ ବୀର ଉପାରୋ ॥
ଆନି ସଜୀଓ୍ୱନ ହାଥ ଦଈ ତବ । ଲଛିମନ କେ ତୁମ ପ୍ରାନ ଉବାରୋ । ॥
କୋ ନହିଁ ଜାନତ ହୈ ଜଗମେଂ କପି । ସଂକଟମୋଚନ ନାମ ତିହାରୋ ।୫।

ରାୱନ ଯୁଦ୍ଧ ଅଜାନ କିୟୋ ତବ । ନାଗ କି ଫାଁସ ସବୈ ସିର ଡାରୋ ॥
ଶ୍ରୀରଘୁନାଥ ସମେତ ସବୈ ଦଲ । ମୋହ ଭୟୋ ୟହ ସଂକଟ ଭାରୋ ॥
ଆନି ଖଗେସ ତବୈ ହନୁମାନ ଜ । ବନ୍ଧନ କାଟି ସୁତ୍ରାସ ନିୱାରୋ । ॥
କୋ ନହିଁ ଜାନତ ହୈ ଜଗମେଂ କପି । ସଂକଟମୋଚନ ନାମ ତିହାରୋ ।୬।

ବଂଧୁ ସମେତ ଜବୈ ଅହିରାୱନ । ଲୈ ରଘୁନାଥ ପତାଲ ସିଧାରୋ ॥
ଦେୱିହିଂ ପୂଜି ଭଲୀ ବିଧି ସୋଂ ବଲି । ଦେଉ ସବୈ ମିଲି ମଂତ୍ର ବିଚାରୋ ॥
ଜାୟ ସହାୟ ଭୟୋ ତବ ହୀ । ଅହିରାୱନ ସୈନ୍ୟ ସମେତ ସଁହାରୋ ॥
କୋ ନହିଁ ଜାନତ ହୈ ଜଗମେଂ କପି । ସଂକଟମୋଚନ ନାମ ତିହାରୋ ।୭।

କାଜ କିୟେ ବଡ଼ ଦେୱନ କେ ତୁମ । ବୀର ମହାପ୍ରଭୁ ଦେଖି ବିଚାରୋ ॥
କୌନ ସୋ ସଂକଟ ମୋର ଗରୀବ କୋ । ଜୋ ତୁମସୋଂ ନହିଁ ଜାତ ହୈ ଟାରୋ ॥
ବେଗି ହରୋ ହନୁମାନ ମହାପ୍ରଭୁ । ଜୋ କଛୁ ସଂକଟ ହୋୟ ହମାରୋ ॥
କୋ ନହିଁ ଜାନତ ହୈ ଜଗମେଂ କପି । ସଂକଟମୋଚନ ନାମ ତିହାରୋ ।୮।

ଦୋହା – ଲାଲ ଦେହ ଲାଲୀ ଲସେ ଅରୁ ଧରି ଲାଲ ଲଂଗୂର ।
ବଜ୍ର ଦେହ ଦାନୱ ଦଲନ, ଜୟ ଜୟ ଜୟ କପି ସୂର ।।

//ଇତି ସଂକଟମୋଚନ ହନୁମାନାଷ୍ଟକ ସମ୍ପୂର୍ଣ୍ଣ//



# ହନୁମାନଜୀକି ଆରତୀ

ଆରତୀ କୀଜୈ ହନୁମାନ ଲଲାକୀ  ଦୁଷ୍ଟ ଦଲନ ରଘୁନାଥ କଲାକୀ (ଘୋଷା)
ଜାକେ ବଲସେ ଗିରିବର କାଁପୈ । ରୋଗ ଦୋଷ ଜାକେ ନିକଟ ନ ଝାଁପୈ ।।୧।।
ଅଂଜନୀ ପୁତ୍ର ମହାବଲ ଦାଈ । ସଂତନ କେ ପ୍ରଭୁ ସଦା ସହାଈ ।।୨।।
ଦେ ବୀର ରଘୁନାଥ ପଠାୟେ । ଲଙ୍କା ଜାରି ସୀୟ ସୁଧି ଲାୟେ ।।୩।।
ଲଂକା ସୋ କୋଟ ସମୁଦ୍ର ସୀ ଖାଈ । ଜାତ ପବନ ସୁତ ବାର ନ ଲାଈ ।।୪।।
ଲଂକା ଜାରି ଅସୁର ସଂହାରେ । ସିୟା ରାମଜୀକେ କାଜ ସଁୱାରେ ।।୫।।
ଲକ୍ଷ୍ମଣ ମୂର୍ଚ୍ଛିତ ପଡ଼େ ସକାରେ । ଆନି ସଜୀବନ ପ୍ରାନ ଉବାରେ ।।୬।।
ପୈଠି ପତାଲ ତୋରି ଜମ କାରେ । ଅହିରାୱନ କୀ ଭୁଜା ଉଖାରେ ।।୭।।
ବାୟେଁ ଭୁଜା ଅସୁର ଦଲ ମାରେ । ଦହିନେ ଭୁଜା ସନ୍ତ ଜନ ତାରେ ।।୮।।
ସୁର ନର ମୁନି ଆରତୀ ଉତାରେ । ଜୈ ଜୈ ଜୈ ହନୁମାନ ଉଚାରେ ।।୯।।
କଂଚନ ଥାର କପୂର ଲୌ ଛାଈ । ଆରତୀ କରତ ଅଂଜନା ମାଈ ।।୧୦।।
ଜୋ ହନୁମାନ(ଜୀ) କି ଆରତୀ ଗାୱୈ । ବସି ବୈକୁଂଠ ପରମ ପଦ ପାୱେ ।।୧୧।।



# ଶ୍ରୀ ହନୁମାନ ଚାଳିଶା

*ଶ୍ରୀ ରାମଚନ୍ଦ୍ର ମିଶ୍ର*

ପ୍ରଭୁଙ୍କର କାର୍ଯ୍ୟ ପୂର୍ଣ୍ଣ ସମାପନ ହୋଇ ଯିବା ପରେ ପ୍ରଭୁଙ୍କ ଭୃତ୍ୟର ସୁଖ ଓ ସନ୍ତୋଷ ହୋଇଥାଏ । ସେବକର କେବେ ଗୋଟିଏ ରୂପ ନଥାଏ । ପ୍ରଭୁଙ୍କର ଯେଉଁଥିରେ ସୁଖ ହୁଏ, ଯେଉଁ ରୂପରେ ପ୍ରଭୁଙ୍କର କାର୍ଯ୍ୟ ସୁସମ୍ପନ୍ନ ହୁଏ, ସେବକ ସେହି ରୂପକୁ ଆଦରି ନିଏ । ସେବକ ପ୍ରଭୁଙ୍କ ସଖା, ବାହନ, ଦାସ, ଧ୍ୱଜା, ଆସନ ହୋଇ ଯାଉଥିଲେ ସେଥିରେ ହିଁ ତାଙ୍କର ସନ୍ତୋଷ । ଏମିତି ହିଁ ସେବକ, ସ୍ୱାମୀ ପ୍ରଭୁ ଅପେକ୍ଷା ଅଧିକ ସମ୍ମାନ ଓ ଭକ୍ତି-ଭାଜନ ହୋଇଥାଏ । ତେଣୁ ରାମାୟଣ ମହାକାବ୍ୟରେ ହନୁମାନଙ୍କର ପ୍ରତିଷ୍ଠା ଓ ସମ୍ମାନ ।

"ରାମ-ଦୂତ ଅତୁଲିତ ବଲଧାମା ।" ସେ ସ୍ୱାମୀ ଶ୍ରୀରାମଙ୍କ ଦୂତ ହୋଇ ସୀତାଙ୍କ ପାଖକୁ ଶ୍ରୀରାମଙ୍କ ବାର୍ତ୍ତା ନେଇ ବନ୍ଦିନୀ ସୀତାଙ୍କୁ ଅଜସ୍ର ଆନନ୍ଦର ଅଧିକାରିଣୀ କରିଥିଲେ ।

ଶ୍ରୀରାମ ଓ ଲକ୍ଷ୍ମଣଙ୍କ ସହ ପ୍ରଥମ ଦେଖା ପରେ ସେ ଦୁହିଙ୍କୁ ନିଜ କାନ୍ଧରେ ବସାଇ ନେଇଯାଇଛନ୍ତି ସୁଗ୍ରୀବଙ୍କ ପାଖକୁ । ରାମ-ରାବଣ ଯୁଦ୍ଧ ବେଳେ ପୁଷ୍ପକ ବିମାନରେ ଥିବା ରାବଣ ସହ ଯୁଦ୍ଧ କରିବା ନିମନ୍ତେ ଶ୍ରୀରାମ ହନୁମାନଙ୍କ କାନ୍ଧ ଉପରେ ବିରାଜମାନ ହୋଇ ରାବଣ ସହ ଯୁଦ୍ଧ କରିଥିଲେ । ସେବକ ହନୁମାନ ଦୁଇଥର ରାମାୟଣରେ ଶ୍ରୀରାମଙ୍କ ବାହନ ହୋଇଛନ୍ତି ।

ଲକ୍ଷ୍ମଣ ଯୁଦ୍ଧ କ୍ଷେତ୍ରରେ ମୂର୍ଚ୍ଛା ଯାଇଥିବା ବେଳେ ହନୁମାନ ହିଁ ସ୍ୱତଃପ୍ରବୃତ୍ତ ହୋଇ ଗନ୍ଧମାର୍ଦ୍ଦନରୁ ସଂଜୀବନୀ ଆଣିବାକୁ ସାହସ କରି ଶ୍ରୀରାମଙ୍କ ଅନୁମତି ଯାଚନା କରିଥିଲେ । "ରଘୁପତି କୀହ୍ନୀ ବହୁତ ବଡ଼ାଇ, ତୁମ ମମ ପ୍ରିୟ ଭରତହିଁ ସମ ଭାଇ ।" ଶ୍ରୀରାମ ନିଜ ଉଦାରତା ଯୋଗୁଁ ସେବକକୁ ଭାଇ ପରି କରିଦେଇ ହନୁମାନଙ୍କ ଭକ୍ତିର ଶ୍ରେଷ୍ଠତ୍ୱ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ।

ଏପରି ପ୍ରଗାଢ଼ ଓ ସ୍ୱାର୍ଥହୀନ ଭକ୍ତି ଫଳରୁ ଶ୍ରୀ ହନୁମାନ ଶ୍ରୀରାମଙ୍କ ଦ୍ୱାରପାଳ ହୋଇ ଯାଇଛନ୍ତି। ଅନ୍ୟ ଭକ୍ତମାନଙ୍କ ଭକ୍ତିର ଉତ୍କର୍ଷତା ପରୀକ୍ଷା କରି ସେ ଭକ୍ତ ହନୁମାନଙ୍କୁ ତାଙ୍କ ନିକଟରେ ଦ୍ୱାରପାଳ ହେବାକୁ ଅନୁମତି ପ୍ରଦାନ କରିଛନ୍ତି।

"ରାମ ଦୁଆରେ ତୁମ ରଖୱାରେ,

ହୋତ ନ ଆଜ୍ଞା ବିନୁ ପୈସାରେ।"

ଭକ୍ତି ଦ୍ୱାରା ଈଶ୍ୱରଙ୍କ ସାନ୍ନିଧ ଲାଭ ନିମନ୍ତେ ଆବଶ୍ୟକ (୧) ଈଶ୍ୱରଙ୍କ କୃପା (୨) ତାଙ୍କର ପରମ ଭକ୍ତମାନଙ୍କର ପ୍ରେରଣା ତଥା ଅନୁକମ୍ପା ଏବଂ (୩) ସାଧନା। ତେଣୁ ଉପନିଷଦ କହନ୍ତି, ପରମାତ୍ମା କେବଳ ସାଧନା ଲଭ୍ୟ ନୁହନ୍ତି। କୃପା ଲଭ୍ୟ ଏବଂ ସେ କୃପା ନିମନ୍ତେ ସାଧନା, ତାଙ୍କର ପରମ ଭକ୍ତମାନଙ୍କ ପ୍ରେରଣା ଓ ଅନୁକମ୍ପା। ଏହା ପ୍ରମାଣିତ ହୋଇଛି -

"ତୁମ ଉପକାର ସୁଗ୍ରୀବହିଁ କିହ୍ନା,
ରାମ ମିଲାୟ ରାଜପଦ ଦୀହ୍ନା ।
ତୁହ୍ମାରୋ  ମନ୍ତ୍ର ବିଭୀଷଣ ମାନା
ଲଙ୍କେଶ୍ୱର ଭଏ ସବ ଜଗ ଜାନା।"

ଭକ୍ତି ଓ ସେବାର ଦୁଇଟି ଦିଗ :-

"ରାମ କାଜ କରିବେ କୋ ଆତୁର"।

ଏବଂ

"ପ୍ରଭୁ ଚରିତ୍ର ସୁନିବେକୋ ରସିଆ
ରାମ ଲଖନ ସୀତା ମନ ବସିୟା।"

ନାମ ପଠନ, ସ୍ମରଣ, ମନନ ତଥା ଭଗବତ୍ ଲୀଳା ସ୍ମରଣ ଭକ୍ତି ବୃଦ୍ଧି କରିଥାଏ।

ଶ୍ରୀ ହନୁମାନ "ଜ୍ଞାନ ଗୁନ ସାଗର" ତଥା "ବିଦ୍ୟାୱାନ ଗୁନୀ ଅତି ଚାତୁର।"

ତାଙ୍କର ଗୁରୁ ଥିଲେ ସ୍ୱୟଂ ସୂର୍ଯ୍ୟ। କଥିତ ଅଛି ଯେ, ପିଲା ଦିନୁ ଅତି ଚପଳ ଓ ଦୁଷ୍ଟ ହନୁମାନଙ୍କୁ ତାଙ୍କର ପିତା ପବନ ଦେବ, ଶିକ୍ଷା ଲାଭ କରିବା ନିମନ୍ତେ ତାଙ୍କୁ ସୂର୍ଯ୍ୟଙ୍କ ପାଖକୁ ପଠାଇବା ପାଇଁ ସ୍ଥିର କରି ସୂର୍ଯ୍ୟଙ୍କ ଅନୁମତି ପ୍ରାର୍ଥନା କରିଥିଲେ। ସୂର୍ଯ୍ୟ

କିନ୍ତୁ ଏ ପ୍ରାର୍ଥନାରେ ବିଚଳିତ ହୋଇ ଯାଇଥିଲେ। ଶ୍ରୀ ହନୁମାନ ଅତି ବାଲ୍ୟକାଳରୁ ଅତ୍ୟନ୍ତ ପ୍ରତାପୀ ଓ ବଳଶାଳୀ ଥିଲେ। କ୍ଷୁଧା ଭଞ୍ଜନ ନିମନ୍ତେ ସେ ଉଦୟମାନ ସୂର୍ଯ୍ୟଙ୍କୁ ପକ୍ୱ ବିମ୍ୱଫଳ ବୋଲି ବିଚାର କରି ଭୂଲୋକରୁ ଗୋଟିଏ ଲମ୍ଫ ପ୍ରଦାନ କରି ସୂର୍ଯ୍ୟଙ୍କୁ କରାୟତ କରି ଦେଇଥିଲେ।

"ଯୁଗ ସହସ୍ର ଯୋଜନ ପର ଭାନୁ,

ଲୀଲ୍ୟୋ ତାହି ମଧୁର ଫଲ ଜାନୁ।" ଅର୍ଥାତ୍

ବାର ହଜାର ଯୋଜନ ଦୂରରେ ସ୍ଥିତ ସୂର୍ଯ୍ୟଙ୍କୁ ଆପଣ ମଧୁର ଫଳ ଭାବି ନେଇ ଯାଇଥିଲେ। ଫଳରେ ପୃଥିବୀ ଅନ୍ଧକାରମୟ ହୋଇଗଲା। ଦେବତାମାନେ ଇନ୍ଦ୍ରଙ୍କ ଶରଣାପନ୍ନ ହେଲେ। ଇନ୍ଦ୍ର ନିଜର ବଜ୍ର ପ୍ରୟୋଗ କରି ଶ୍ରୀହନୁମାନଙ୍କ ହନୁହାଡ଼ ବିସ୍ଥାରିତ କରି ସୂର୍ଯ୍ୟଙ୍କୁ ପୁନରାୟ ତାଙ୍କର ଗତିପଥକୁ ଫେରାଇ ନେଇଥିଲେ। ସେହି ଦିନରୁ ଶ୍ରୀହନୁମାନ ହେଲେ 'ବଜ୍ରଅଙ୍ଗବାଲା' ବା "ବଜରଙ୍ଗୀବାଲି"।

ଶ୍ରୀହନୁମାନଙ୍କ ବାଲ୍ୟ ଶିକ୍ଷା –

ଫେରିଯିବା ପୁଣି ହନୁମାନଙ୍କ ଶିକ୍ଷା କଥାକୁ। ଭୟଭୀତ ସୂର୍ଯ୍ୟ କହିଲେ, "ମୋର ସମୟ କାହିଁ ? ଶିଷ୍ୟକୁ ବସାଇ ଶିକ୍ଷା ଦେବାକୁ ?" ନଛୋଡ଼ବନ୍ଧା ପବନଦେବ ବିନୀତ ଭାବେ ଏ ପ୍ରଶ୍ନର ସମାଧାନ କରି କହିଲେ, "ମୁଁ ଆପଣଙ୍କୁ ଗୁରୁ ପଦରେ ବରଣ କରି ସାରିଛି। ଆପଣ ହିଁ ସୃଷ୍ଟିର ଆରମ୍ଭରୁ ମୋର ଗତି ଓ ବେଗର ନିୟନ୍ତ୍ରଣ କରି ଆସିଛନ୍ତି। ତେଣୁ ମୋର ପୁତ୍ରର ଗୁରୁ ଆପଣ ହିଁ ହେବା ସମୀଚିନ ହେବ। ଏ ଯୁକ୍ତି ଶୁଣି ସୂର୍ଯ୍ୟଙ୍କର ଅକଲଗୁଡୁମ। ଅଗତ୍ୟା ରାଜି ହେବାକୁ ହିଁ ହେଲା। ତେବେ ଗୋଟିଏ ସର୍ତ୍ତରେ। ସୂର୍ଯ୍ୟ ପୃଥିବୀ ପ୍ରଦକ୍ଷିଣ କରିବା ସମୟରେ ଛାତ୍ର ଶ୍ରୀ ହନୁମାନ ସୂର୍ଯ୍ୟଙ୍କ ରଥଚାଳକ ଅରୁଣଙ୍କ ସମ୍ମୁଖରେ ସପ୍ତାଶ୍ୱ ଉପରେ ଦଣ୍ଡାୟମାନ ହୋଇ ରହି ଶିକ୍ଷା ଗ୍ରହଣ କରିବେ। ଏଥିରେ ସୂର୍ଯ୍ୟଙ୍କ ଭୟର କାରଣ ନିବୃତ୍ତ ହୋଇଗଲା। ଶ୍ରୀ ହନୁମାନ ଜ୍ଞାନ ଓ ଜ୍ୟୋତିର ସମାବେଶ ସୂର୍ଯ୍ୟଙ୍କଠାରୁ ଦିବାରାତ୍ର ଚବିଶ ଘଣ୍ଟା ଶିକ୍ଷା ଲାଭ କରିଥିଲେ। ତେଣୁ ସେ "ଜ୍ଞାନଗୁନ ସାଗର" ଓ "ବିଦ୍ୟାୱାନ ଗୁନୀ ଅତି ଚାତୁର।"

## ଗୋସ୍ୱାମୀ ତୁଳସୀ ଦାସ କୃତ
## ଶ୍ରୀ ହନୁମାନ ଚାଳିଶା

ଗୋସ୍ୱାମୀ ତୁଳସୀ ଦାସ ସାଧାରଣ ଜନମାନସରେ "ଅବଧି ଭାଷା" କଥିତ ଭାଷା ହୋଇଥିବାରୁ ସମସ୍ତେ ବୁଝି ସମଝି ପାରିବା ପରି ସେହି ପ୍ରଚଳିତ "ଅବଧି ଭାଷା"ରେ ଆଦର୍ଶ ପୁରୁଷ ଶ୍ରୀରାମଙ୍କ କଥା ଓ କାହାଣୀ "ଶ୍ରୀରାମ ଚରିତ ମାନସ" ଓ ଆଦର୍ଶ ଭକ୍ତ ଶ୍ରୀହନୁମାନଙ୍କ ଚରିତ "ହନୁମାନ ଚାଳିଶା" ଓ "ସଙ୍କଟମୋଚନ ହନୁମାନାଷ୍ଟକ" ରଚନା କରି ଲୌକିକ ଅବଧି ଭାଷାକୁ ହିନ୍ଦୀର ଅନ୍ୟତମ ଉପଭାଷା ସ୍ତରରୁ ଉର୍ଦ୍ଧ୍ୱକୁ ନେଇ ଆସି ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଓ ପରିଚୟ ପ୍ରଦାନ କରି ପ୍ରତିଷ୍ଠିତ କରିପାରିଛନ୍ତି।

ସପ୍ତଦଶ ଶତାବ୍ଦିରେ ଭାରତୀୟ ସାହିତ୍ୟରେ ଭକ୍ତିରସ ଧାରାର ପରମ ପ୍ଲାବନ ଚାଲିଥିଲା। ସେହି ସମୟରେ ଓଡ଼ିଶାର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ରାମଙ୍କୁ ବୈଦେହୀଶ ଭାବରେ ଚିତ୍ରଣ କରି "ବୈଦେହୀଶ ବିଳାସ" ରଚନା କରିଥିଲେ। ବୈଦେହୀଶ ବିଳାସର ଭାଷାର କ୍ଲିଷ୍ଟତା ଓ ଦୁର୍ବୋଧତା, ଛନ୍ଦମାନଙ୍କର ସୁମଧୁର ସଙ୍ଗୀତ ଓ ପଦବିନ୍ୟାସରେ ଓଡ଼ିଶାର ସାଧାରଣ ଜନତାଙ୍କୁ ଆକୃଷ୍ଟ କରିପାରିଥିଲା।"

### ଶ୍ରୀରାମ

ରାମାୟଣ ମହାକାବ୍ୟରେ ବାଲ୍ମିକୀ ରାମଙ୍କୁ ଏକ ଆଦର୍ଶ ଓ ଶ୍ରେଷ୍ଠ ପୁରୁଷ ଭାବରେ ଶୌର୍ଯ୍ୟ, ବୀର୍ଯ୍ୟ, ବ୍ୟବହାର ଓ ଶୀଳତାର ପ୍ରତୀକ ରୂପେ ବର୍ଣ୍ଣନା କରି ରାମାୟଣର ଶେଷ ଭାଗ "ଉତ୍ତର କାଣ୍ଡ" ରେ ତାଙ୍କୁ ବିଷ୍ଣୁଙ୍କ ଏକ ଅବତାର ରୂପେ ଅଭିହିତ କରିଛନ୍ତି। କିନ୍ତୁ ଆଧାତ୍ମ ରାମାୟଣର ପ୍ରଥମ ଅଧ୍ୟାୟରୁ ହିଁ ଶ୍ରୀରାମଙ୍କୁ ପରମବ୍ରହ୍ମ ଓ ସୀତାଙ୍କୁ 'ମୂଳ ପ୍ରକୃତି' ବା 'ମାୟା' ବୋଲି ବର୍ଣ୍ଣନା କରାଯାଇଛି।

ଗୋସ୍ୱାମୀ ତୁଳସୀ ଦାସ ମଧ ଆଧାତ୍ମ ରାମାୟଣର ଭାବନାକୁ ଗ୍ରହଣ କରି ନେଇଛନ୍ତି। ନିତ୍ୟ ପରବ୍ରହ୍ମ ଓ ଜୀବ ମଧରେ ପ୍ରହେଳିକା ପ୍ରାୟ ପ୍ରତୀୟମାନ ମାୟାକୁ ସୀତା ଆଖ୍ୟା ଦେଇ ଲକ୍ଷ୍ମଣଙ୍କୁ ଜୀବ ବୋଲି ଅଭିହିତ କରି "ବ୍ରହ୍ମ ଜୀବ ମାଝେ ମାୟା ରୂପା ଓ୍ୱହି" ବୋଲି ତୁଳସୀ ନିଜ ଭାବ ସ୍ପଷ୍ଟ କରି ଦେଇଛନ୍ତି। ରାମ ଓ ସୀତାଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଜୀବ। ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନଙ୍କ ସଦୃଶ ଭ୍ରାତାମାନେ ଓ ହନୁମାନ ସୁଗ୍ରୀବ ବିଭୀଷଣ, ଆଦି ସବୁ ଚରିତ୍ର ଜୀବ ପଦ ବାଚ୍ୟ। ଜୀବ ହିଁ ଭକ୍ତ ପଦ ନିମନ୍ତେ

ଆକାଂକ୍ଷା କରିପାରେ। କିନ୍ତୁ ଲକ୍ଷ୍ମଣ ଯଦିଓ ରାମଙ୍କ ଭାଇ ବନବାସ ବେଳେ ଦିବାରାତ୍ରି ଅନିଦ୍ର ଦୀର୍ଘ ଚଉଦ ବର୍ଷକାଳ ରାମଙ୍କୁ ଭାଇ ଅଗ୍ରଜ ଭାବରେ ଆରାଧନା କରି ଆସିଛନ୍ତି ଅଜ ଭାବରେ ନୁହେଁ। ତେଣୁ ଲକ୍ଷ୍ମଣ ଭକ୍ତ ପଦବାଚ୍ୟ ନୁହନ୍ତି। ଦଶରଥ ଶ୍ରୀରାମଙ୍କୁ ନିଜ ପୁତ୍ର ଭାବି ଜୀବନରେ ତଥା ମୃତ୍ୟୁ ସମୟରେ ସ୍ନେହ ଶ୍ରଦ୍ଧା କରୁଥିଲେ। ତେଣୁ ସେ ମଧ ଭକ୍ତ ପଦବାଚ୍ୟ ହୋଇପାରି ନାହାନ୍ତି। ଶ୍ରୀରାମଙ୍କ ସ୍ୱରୂପ କେବଳ ସୀତାହିଁ ବୁଝିଥିଲେ। ସମଗ୍ର ରାମାୟଣ ମହାକାବ୍ୟରେ କେବଳ ବାଳୀ ଓ ରାବଣ ରାମଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ଜାଣିଥିଲେ। ତେଣୁ ସେମାନେ ମୃତ୍ୟୁବେଳେ ରାମଙ୍କୁ ବିଷ୍ଣୁଙ୍କ ରୂପରେ ଆରାଧନା ଓ ପ୍ରାର୍ଥନା କରିଛନ୍ତି। ଜୀବନ କାଳ ଭିତରେ ଭକ୍ତି କରିବା ସୌଭାଗ୍ୟ-ବଞ୍ଚିତ ବାଳୀ ଓ ରାବଣ ମୃତ୍ୟୁ ପରେ ମୋକ୍ଷ ଲାଭ କରିପାରିଛନ୍ତି। ଏଥର ଆସନ୍ତୁ ଭକ୍ତି ଓ ଭକ୍ତଙ୍କ ସମ୍ପର୍କକୁ ...

**ଭକ୍ତି କ'ଣ ?**

ମନୁଷ୍ୟ ତଥା ପ୍ରତି ଜୀବର ମନ ଅଛି। ମନ ଗୋଟିଏ ବିଚିତ୍ର ଓ ଅବୁଝା ବସ୍ତୁ। ଅବୁଝା ଅର୍ଥ ଯାହାକୁ ବୁଝି ହୁଏନି ଏବଂ ଯେ ବୁଝେ ନାହିଁ। ମନ ଭଗବାନଙ୍କଠାରୁ ପୃଥକ। ଅଷ୍ଟବିଧ ପ୍ରକୃତିରୁ ଗୋଟିଏ ବୋଲି ଭଗବାନ ଗୀତାର ସପ୍ତମ (ଜ୍ଞାନ ବିଜ୍ଞାନ ଯୋଗ) ଅଧ୍ୟାୟର ଚତୁର୍ଥ ଶ୍ଳୋକରେ କହିଛନ୍ତି।

**"ଭୂମିରାପୋଽନଲୋ ବାୟୁଃ ଖଂ ମନୋବୁଦ୍ଧିରେବ ଚ,**

**ଅହଙ୍କାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା।"** ଗୀତା ୭/୪

ସେହି ମନରେ ବିଭିନ୍ନ ଭାବ ଜାତ ହୁଏ। ଏହି ଭାବର ଜନ୍ମ ଓ ବିଲୟ ସେହି ମନରେ ହିଁ ସ୍ୱତଃସ୍ଫୁତ ହୋଇ ଚାଲିଥାଏ। କେତେବେଳେ କେଉଁ ଭାବ ଜନ୍ମ ନିଏ ଓ କେଉଁ ଭାବର ବିଲୟ ହୋଇଯାଏ, ତାର କୌଣସି ନିର୍ଦ୍ଦିଷ୍ଟ କାରଣ ନଥାଏ। ସେହି ଭାବମାନଙ୍କ ମଧ୍ୟରେ ପ୍ରେମ ଓ ଭଲ ପାଇବା ଗୋଟିଏ ଭାବ। ସାଂସାରିକ ବ୍ୟକ୍ତି ବା ବିଷୟକୁ ଭଲ ପାଇବା ବା ପ୍ରେମ କରିବା ମଧ ଏକ ଉତ୍ତମ ଭାବ। ଏହି ଭାବକୁ 'ରାଗ' କୁହାଯାଏ। ରାଗ ଅର୍ଥ ଓଡ଼ିଆରେ ଦୁଇଟି। ପ୍ରଥମ କ୍ରୋଧ ଦ୍ୱିତୀୟଟି ପ୍ରେମ ବା ଭଲ ପାଇବା। ରାଗର ବିପରୀତ ଭାବ ହେଲା ଦ୍ୱେଷ। ଉଭୟ ରାଗ ବା ଦ୍ୱେଷ ଜୀବର ଇନ୍ଦ୍ରିୟ ସୁଖ ନିମନ୍ତେ ହୋଇଥାଏ। କିନ୍ତୁ ମନୁଷ୍ୟ ମନରେ ଯେତେବେଳେ ସଂସାରର ଊର୍ଦ୍ଧ୍ୱରେ

ଓ ବାହାରେ ରହିଥିବା ଭଗବାନଙ୍କ ନିମନ୍ତେ ପ୍ରେମ ଜାତ ହୁଏ, ସେତେବେଳେ ସେହି ଭାବକୁ ଭକ୍ତି କୁହାଯାଏ। ସେହି ପ୍ରେମରେ ମନୁଷ୍ୟର ନିଜ ଚକ୍ଷୁ ବା କର୍ଣ୍ଣ ଆଦି ଇନ୍ଦ୍ରିୟ ତୃପ୍ତିର ଲାଳସା ନଥାଏ। ଭକ୍ତିର ମାତ୍ର ଗୋଟିଏ ଲାଳସା ରହିଥାଏ। ତାହା ହେଉଛି, "ଭଗବାନଙ୍କର ସନ୍ତୋଷ ବିଧାନ"। ଭଗବାନଙ୍କର ପ୍ରୀତି ଉତ୍ପାଦନ। ଭକ୍ତର ନିଜ କଥା ଚିନ୍ତା କରିବା ପାଇଁ ବେଳ ନଥାଏ। ସ୍ପୃହା ବି ନଥାଏ। ସେ କେବଳ ଭଗବାନଙ୍କ ନିମନ୍ତେ ତାର ସବୁ ସମୟ, ସବୁ କାମନା ଅର୍ପଣ କରିଦେଇଥାଏ। ତାର ନିଜ ସଂସାରର କ'ଣ ରହିଲା ? କଣ ଗଲା, କଣ ମିଳିଲା ? ସେ ବିଷୟରେ ସେ ନୀରବ, ନିଃସ୍ପୃହ।

## ପ୍ରଥମ ଭକ୍ତ ଅହଲ୍ୟା

ରାମାୟଣରେ ଆମେ ଚାରିଜଣ ଭକ୍ତଙ୍କ ସାକ୍ଷାତ ପାଉ। ପ୍ରଥମ ଭକ୍ତ ଅହଲ୍ୟା। ଗୌତମ ଋଷିଙ୍କ ପତ୍ନୀ, ପ୍ରଜାପତି ବ୍ରହ୍ମାଙ୍କ ନନ୍ଦିନୀ। ତାଙ୍କ ମନରେ ସମସ୍ତ ଭାବ ଓ ଭାବନା ରାମ କେନ୍ଦ୍ରିକ। ରାମ ଭାବନା ତାଙ୍କୁ ପ୍ରସ୍ତର ପାଷାଣ କରି ଦେଇଥିଲା। ପାଷାଣୀ ପ୍ରସ୍ତର ଅହଲ୍ୟା ରାମଙ୍କ ଧ୍ୟାନରେ ନିଜର ସମ୍ପୂର୍ଣ୍ଣ ସତ୍ତା ଓ ଚେତନା ହରାଇ ବସିଥିଲେ। ଦିନ ଦିନ ନୁହେଁ, ବର୍ଷ ପରେ ବର୍ଷ ନୁହେଁ, ଯୁଗ ପରେ ଯୁଗ ନିମନ୍ତେ। ସ୍ୱାମୀ ପରିତ୍ୟକ୍ତା ଅହଲ୍ୟା ରାମଙ୍କ ନିମନ୍ତେ ଗୌତମ ମୁନିଙ୍କ ଆଶ୍ରମରେ ଶୀତକାକର, ଖରା ବର୍ଷା ସହି ଅପେକ୍ଷା କରିଥିଲେ। ଧୈର୍ଯ୍ୟ ଓ ପ୍ରତୀକ୍ଷା ଭକ୍ତ ନିମନ୍ତେ ଆଭୂଷଣ ମାତ୍ର। ଶେଷରେ ରାମ ଅହଲ୍ୟାଙ୍କୁ କୃତାର୍ଥ କରିଥିଲେ ସୀତାଙ୍କ ସ୍ୱୟଂମ୍ବର ସଭାକୁ ଯିବାବେଳେ। ଅଦ୍ଭୁତ କଳ୍ପନା ଓ ପରିବେଶ ଭିତରେ ଶ୍ରୀରାମ ପ୍ରସ୍ତରମୟୀ ପାଷାଣୀ ଅହଲ୍ୟାଙ୍କୁ ନିଜର ଦକ୍ଷିଣ ପଦର ବୃଦ୍ଧାଙ୍ଗୁଷ୍ଠିର ଅଗ୍ରଭାଗ ସ୍ପର୍ଶ ମାତ୍ର କଲେ । ସେହି ପାବନ ଇପ୍ସିତ, କ୍ଷଣିକ ସ୍ପର୍ଶ ପ୍ରସ୍ତରରେ ଜୀବନ୍ୟାସ କରିଦେଇଥିଲା। ଭକ୍ତିର ଅଶ୍ରୁଧାରାରେ ଅନ୍ଧ ହୋଇ ଯାଇଥିବା ନିମୀଳିତ ଚକ୍ଷୁଦ୍ୱୟ ଆକ୍ଷିପତା ଖୋଲିବା ଆଗରୁ ଶ୍ରୀରାମ ମାତ୍ର ଗୋଟିଏ ପଦ କଥା କହି ପ୍ରଣାମ କରି ସାରିଥିଲେ ଦେବୀ ଅହଲ୍ୟାଙ୍କୁ; "ରାମୋହଂ" ଅର୍ଥାତ୍ "ମୁଁ ରାମ"। ବାସ୍ ଏତିକି ମାତ୍ର । ଲମ୍ବା ଭାଷଣ ନାହିଁ, ସୁଖ ଦୁଃଖ ବିପଦ କଥା ବାର୍ତ୍ତା ନାହିଁ, ଖାଲି "ରାମୋହଂ"। ଯୁଗ ଯୁଗ ଧରି ବାକ୍‌ରୁଦ୍ଧା ଅହଲ୍ୟା ପରଂବ୍ରହ୍ମ ରାମଙ୍କ ସ୍ତୁତି ଆରମ୍ଭ କରି ଦେଇଥିଲେ। ରାମଙ୍କ "ରାମୋହଂ"ର ଅନୁସ୍ୱାର ଶବ୍ଦ ଆକାଶରେ ଲୀନ ହେବା ବେଳକୁ ସ୍ତବ୍ଧ ହୋଇ ଦଣ୍ଡାୟମାନ ବିଶ୍ୱାମିତ୍ର ଓ ଲକ୍ଷ୍ମଣଙ୍କ ସମ୍ମୁଖରେ ହିଁ ରାମଙ୍କ ପଦପ୍ରାନ୍ତରେ ମସ୍ତକ ରଖି ଅହଲ୍ୟା ସ୍ତୁତି ଆରମ୍ଭ କରି ଦେଇଥିଲେ ଭକ୍ତି ଭାବରୁଦ୍ଧ ଗଦ୍ ଗଦ୍ ସ୍ୱରରେ।

## ଦ୍ୱିତୀୟ ଭକ୍ତ କୈବର୍ତ୍ତ -

ଦ୍ୱିତୀୟ ଭକ୍ତ ହେଲେ ଅନାମଧେୟ କୌଣସି ଏକ କୈବର୍ତ୍ତ, ଖାଣ୍ଟି ଓଡ଼ିଆରେ କେଉଟ। ଜୀବିକା ଥିଲା ଗଙ୍ଗାରେ ଡଙ୍ଗା ବାହିବା, ଲୋକମାନଙ୍କୁ ଏପଟରୁ ସେ ପଟକୁ ନେବା। ଜାତିରେ ଅସ୍ପୃଶ୍ୟ ପତିତ। ମିଥିଳା ଯିବା ବାଟରେ ବିଶ୍ୱାମିତ୍ର, ରାମ ଓ ଲକ୍ଷ୍ମଣଙ୍କୁ ବିତଳ ବା ସ୍ୱର୍ଗ ଓ ମର୍ତ୍ତ୍ୟକୁ ପାବନ କରି ହିମାଳୟର ଗୋମୁଖରୁ ବାହାରି ପୁଣ୍ୟ ଭୂମି ଭାରତକୁ ଶସ୍ୟ ଶ୍ୟାମଳା କରି "ଗଙ୍ଗାମାତା" ନାମ ସାର୍ଥକ କରୁଥିବା ପାବନୀ ଜାହ୍ନବୀ ନଦୀ ପାର ହେବାକୁ ଶ୍ରୀରାମଙ୍କୁ ଏହି କେଉଟର ସାହାଯ୍ୟ ନେବା ଆବଶ୍ୟକ ଥିଲା।

ଜନ୍ମ ଜନ୍ମର ତପସ୍ୟାର ଫଳ ସବୁ ଅପେକ୍ଷା କରି ରହିଥିଲେ ଏହି ମୁହୂର୍ତ୍ତଟିକୁ। କେଉଟ ଶୁଣି ସାରିଛି ପ୍ରସ୍ତର ମୂର୍ତ୍ତି ନାୟିକା ହେବା ଖବର। ତୁଣ୍ଡ ବାଇଦ ସହସ୍ର କୋଶ।

"ବାଲି ପଡ଼ି ତୋ ଚରଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା" -

କହି ଅଡ଼ି ବସିଥିଲା ସେ ଦିନ କେଉଟ ପାଦ ଧୋଇ ପୋଛାପୋଛି ନକରିଦେଲେ, ଲକ୍ଷ୍ମଣ ଓ ବିଶ୍ୱାମିତ୍ର ଯାଆନ୍ତୁ ପଛେ, କିନ୍ତୁ ଶ୍ରୀରାମଙ୍କୁ କେବେ ନୌକାରେ ଚଢ଼ାଇ ଦେବ ନାହିଁ। ଭକ୍ତ ବତ୍ସଳ ପ୍ରଭୁ ରାମ ଭକ୍ତର ମନ କଥା ବୁଝିଥିଲେ ଓ ତାର ମନୋବାଞ୍ଛା ପୂରଣ କରିଥିଲେ।

"ବଢ଼ାଇ ଦେଲେ ପୟର ଭାବଗ୍ରାହୀ ରଘୁବୀର
ବିଜ୍ଞାନୀ କୈବର୍ତ୍ତ ଧୋଇଲା, ବିଶ୍ୱେ ପତିତପାବନ ନାମ ରହିଲା।"

ରାମାୟଣରେ ରାମ "ପତିତପାବନ" ପତିତା ବୋଲି ସ୍ୱାମୀ ପରିତ୍ୟକ୍ତା ଅହଲ୍ୟା, କୈବର୍ତ୍ତ ଓ ଆଦିମ ବନବାସିନୀ ଶବରୀ ପରି ଭକ୍ତମାନଙ୍କୁ ଦର୍ଶନ କରିବାକୁ ଓ ଦେବାକୁ ଶ୍ରୀରାମ ପଦବ୍ରଜରେ ଚାଲି ଚାଲି ଅଯୋଧ୍ୟା ନଗରୀରୁ ଭକ୍ତମାନଙ୍କ ତପସ୍ୟା ସ୍ଥଳକୁ ଯାଇଛନ୍ତି। ଭକ୍ତ ବତ୍ସଳ ଭକ୍ତର ମନୋକାମନା ପୂର୍ଣ୍ଣ କରିଛନ୍ତି। ଭକ୍ତମାନଙ୍କୁ ପାଦେ ହେଲେ ଘୁଞ୍ଚିବାର ଆବଶ୍ୟକତା ପଡ଼ିନି। ମନରେ କେବଳ ସ୍ମରଣ ମନନ ଅନନ୍ୟଚିନ୍ତା ହୋଇ କେବଳ ପ୍ରାର୍ଥନା - ସବୁବେଳେ ନିରବଚ୍ଛିନ୍ନ ଧୈର୍ଯ୍ୟର ସହ ପ୍ରତୀକ୍ଷା କରିବାକୁ ପଡ଼ିଛି।

## ପ୍ରଭୁ କୃପା -

ଏହି କରୁଣା ବା କୃପା ପ୍ରାପ୍ତିର ସହାୟକ ହୋଇଥାଏ ପ୍ରଭୁଙ୍କ ନିକଟରେ ତାଙ୍କର ଅନ୍ୟ ଭକ୍ତମାନଙ୍କର ଅଳି, ଗୁହାରୀ। ଏପରି ଅଳି ଗୁହାରୀ କରିବା ନିମନ୍ତେ ହନୁମାନ ସର୍ବଶ୍ରେଷ୍ଠ ପଥ ଓ ଉପାୟ। ହନୁମାନଙ୍କ ହୃଦୟ ଅତି କୋମଳ ଓ ଆର୍ଦ୍ର। ବିଶେଷତଃ ରାମ ଭକ୍ତିର ଅଙ୍କୁର ଦେଖିବା ମାତ୍ରେ ହନୁମାନଙ୍କ ଦୟା ଉଚ୍ଛୁଳି ପଡ଼େ। ଏହାର ପ୍ରକୃଷ୍ଟ ଉଦାହରଣ ରାମାୟଣ ମହାକାବ୍ୟରେ ସୁଗ୍ରୀବ ଓ ବିଭୀଷଣ। ଏଇ ଦୁଇ ଜଣଙ୍କ କ୍ଷେତ୍ରରେ ଦେଖିବାକୁ ମିଳେ -

"ତୁମ ଉପକାର ସୁଗ୍ରୀବହିଁ କୀହ୍ନା
ରାମ ମିଲାୟେ ରାଜପଦ ଦୀହ୍ନା।" (ଚୋପାଇ ଷୋଳ)
ତୁହ୍ମାରେ ମନ୍ତ୍ର ବିଭୀଷଣ ମାନା,
ଲଙ୍କେଶ୍ୱର ଭଏ ସବଜଗ ଜାନା । (ଚୌପାଇ ସତର ପଦ)

ଉଭୟେ ସୁଗ୍ରୀବ ଓ ବିଭୀଷଣ ନିଜ ନିଜ ଜ୍ୟେଷ୍ଠ ଭ୍ରାତାମାନଙ୍କ ଦ୍ୱାରା ଲାଞ୍ଛିତ ଓ ପରାଭୂତ ହୋଇ ଜ୍ୟେଷ୍ଠ ଭ୍ରାତାମାନଙ୍କ ପରାକ୍ରମ ଓ ଶକ୍ତି ସମ୍ମୁଖରେ ଭୟଭୀତ ହୋଇ ନିଜର ସ୍ୱଜନମାନଙ୍କଠାରୁ ଅପସରି ଯାଇଥିଲେ। ସେହି ଭୟାର୍ତ୍ତମାନଙ୍କୁ ଭକ୍ତି ମନ୍ତ୍ରରେ ଦୀକ୍ଷିତ କରାଇ ଶ୍ରୀରାମଙ୍କର ଘନିଷ୍ଠ ବନ୍ଧୁ ତଥା ସହଯୋଗୀ କରାଇବାର କୃତୀତ୍ୱ କେବଳ ହନୁମାନଙ୍କର।

## ତୃତୀୟ ଭକ୍ତ ଶବରୀ -

ଏବେ ଆସନ୍ତୁ ଫେରିଯିବା ଅହଲ୍ୟା, କୈବର୍ତ୍ତ ଆଦି ଭକ୍ତଙ୍କ ଗହଣରୁ। ସେଠାରେ ଦେଖିବା ରାମାୟଣର ତୃତୀୟ ଭକ୍ତ ଆଦିବାସୀ ଜନଜାତି ପିତୃମାତୃହରା ଅନାଥିନୀ କନ୍ୟା ଶବରୀକୁ। ଶବରୀ ପିତାମାତାଙ୍କୁ ଦୁନ୍ଦୁଭି ରାକ୍ଷସ ଗ୍ରାସ କରିଦେଇଥିଲା। କବନ୍ଧ ରାକ୍ଷସର କେବଳ ମୁଖ ଗର୍ତ୍ତ ଥିଲା। ଅନ୍ୟ ଅବୟବହୀନ କବନ୍ଧ ରାକ୍ଷସ କେବଳ ଗ୍ରାସ କରୁଥିଲା, ଖାଇ ଦେଉଥିଲା। ସେହି ସର୍ବଗ୍ରାସୀ କବନ୍ଧ ରାକ୍ଷସର କବଳରୁ ଖସି ଆସିଥିଲା ଅନୂଢ଼ା ଶବରୀ ଯୁବତୀଟି। ଭୟାର୍ତ୍ତ ଶବରୀର ବିବାହ କରିବା ସୁଯୋଗ ଜୀବନରେ ଆସି ନଥିଲା। ରାତ୍ରିର ଗଭୀର ଅନ୍ଧକାରକୁ ଆଦରି ନେଇଥିଲା ମାତଙ୍ଗ ଋଷିଙ୍କ ଆଶ୍ରମରେ। ସୂର୍ଯ୍ୟୋଦୟ ପୂର୍ବରୁ ଆଶ୍ରମକୁ ସଫା ସୁତୁରା କରି ହୋମ ସାମଗ୍ରୀ ମଜାମଜି କରି ରଖି ଦେଉଥିଲା।

ଆଉ ହୋମ ନିମନ୍ତେ ସମିଧ କାଷ୍ଠ ରଖି ଦେଉଥିଲା ଗୋପନରେ, ସମସ୍ତଙ୍କ ଅଜ୍ଞାତରେ। କାରଣ ସେ ଜାତିରେ ଅଛବ, ସେଥିରେ ଆହୁରି ସ୍ତ୍ରୀ ଏବଂ ଅବିବାହିତା। ସବୁ ଦିଗରୁ ଅସ୍ପୃଶ୍ୟ। ତେଣୁ ତାର ସେବା ଗ୍ରହଣ କରିବାକୁ କାଳେ ମାତଙ୍ଗ ଋଷି ଓ ତାଙ୍କର ଶିଷ୍ୟମାନେ ଅନିଚ୍ଛା ପ୍ରକାଶ କରିବେ। ଆଉ ସେବା କରିବାରୁ ସେ ବଞ୍ଚିତା ହେବେ।

କିନ୍ତୁ ବିଧିର ବିଚିତ୍ର ବିଧାନ। ଦିନେ ବ୍ରାହ୍ମ ମୁହୂର୍ତ୍ତ ପୂର୍ବରୁ ମାତଙ୍ଗ ମୁନିଙ୍କ ଦୃଷ୍ଟିରେ ପଡ଼ି ଯାଇଥିଲା ଶବରୀ। ଭୟରେ ଜଡ଼ସଡ଼ କମ୍ପିତା ଶବରୀକୁ ଅଭୟ ଆଶ୍ୱାସ ଦେଇ ମାତଙ୍ଗ ମୁନି ସେଇଠି ସେଇ ବ୍ରାହ୍ମ ମୁହୂର୍ତ୍ତରେ ଶବରୀକୁ 'ରାମ ମନ୍ତ୍ର'ରେ ଦୀକ୍ଷିତ କରିଥିଲେ।  ଶବରୀ ମାତଙ୍ଗ ମୁନିଙ୍କ ଶିଷ୍ୟା ହୋଇ ଯାଇଥିଲେ। ଶବରୀକି ରାମ ମନ୍ତ୍ର ଦେଇ ମାତଙ୍ଗମୁନି ଆଶ୍ରମ ତ୍ୟାଗ କରି ତପସ୍ୟା ନିମନ୍ତେ ବନ ଭିତରକୁ, ଆହୁରି ଅଭ୍ୟନ୍ତରକୁ ଯିବା ପୂର୍ବରୁ ଶବରୀକୁ ରାମଙ୍କ ଦର୍ଶନ ନିମନ୍ତେ ସେଠାରେ ଅପେକ୍ଷା କରି ରହିବାକୁ ଆଦେଶ ଦେଇଗଲେ। କେତେ ଦିନ, କେତେମାସ ବା କେତେ ବର୍ଷ ପରେ ରାମ ସେହି ପଥରେ କାହିଁକି ଓ କିପରି ଆସିବେ, କି ରାମଙ୍କ ରୂପ ସମ୍ବନ୍ଧରେ ମଧ୍ୟ କେବଳ ସୁକୋମଳ ନବଘନ ଶ୍ୟାମଳ, କନ୍ଦର୍ପ ସଦୃଶ ମନୋହର, ଶାନ୍ତଧୀର ଧନୁର୍ଦ୍ଧାରୀ ବୋଲି କହିବା ବ୍ୟତୀତ ଅନ୍ୟ କୌଣସି ସୂଚନା ଦେଇ ନଥିଲେ। ସେହି ଦିନଠାରୁ ଆରମ୍ଭ ହୋଇ ଥିଲା ଶବରୀର ପ୍ରାର୍ଥନା ଓ ପ୍ରତୀକ୍ଷା। ଧୈର୍ଯ୍ୟର ପରୀକ୍ଷା କେବଳ ରାମନାମ ସ୍ମରଣ ଓ ମନନ, ନିଜ ଉଚ୍ଚାରଣର ଶ୍ରବଣ। ଏମିତି ବିତିଗଲା ବର୍ଷ ପରେ ବର୍ଷ; ଋତୁ ପରିବର୍ତ୍ତନ। ସବୁ ଭିତରେ ଏକମାତ୍ର ରାମନାମର ଆଶ୍ରୟ। ବାର ବର୍ଷର ଦୀର୍ଘ ପ୍ରତୀକ୍ଷା ପରେ ରାମ ଆସିଥିଲେ ବନ ପ୍ରାନ୍ତର ଘୁରି ଘୁରି ଭକ୍ତ ଶବରୀକୁ ଦର୍ଶନ କରିବାକୁ ଓ ଦର୍ଶନ ଦେବାକୁ। ବହୁ ବର୍ଷ ଆଗରୁ ଯେଉଁ 'ରାମ ମନ୍ତ୍ର' ଦେବର୍ଷି ନାରଦ ଦେଇଥିଲେ ନରହନ୍ତା ଓ ପରସ୍ୱ ଲୁଣ୍ଠନକାରୀ ଦସ୍ୟୁ ରତ୍ନାକରକୁ। ସେହି ପ୍ରତାପୀ 'ରାମ ମନ୍ତ୍ର' ରାମଙ୍କୁ ଟାଣି ଆଣିଥିଲା ଶବରୀ ପାଖକୁ ଏକ ପୂର୍ବାହ୍ନରେ। ଆନନ୍ଦରେ ଅଧୀରା ହୋଇ ଶବରୀ ଅତି ଆଦରରେ ରାମ ଓ ଲକ୍ଷ୍ମଣଙ୍କୁ ନେଇ ଯାଇଥିଲା ନିଜ ପତ୍ର କୁଡ଼ିଆର ଛୋଟ ଅଗଣାକୁ। ରାମ ଓ ଲକ୍ଷ୍ମଣଙ୍କୁ ବସାଇ ନିଜେ ସଦ୍ୟ ତୋଳି ଆଣିଥିବା ବର ଓ କେନ୍ଦୁକୋଳି ଗୋଟିଏ ବାଉଁଶ କୁଲେଇରେ ପରଶି ଦେଲା ନିଜ ଆରାଧ୍ୟ ଦେବତାଙ୍କ ସମ୍ମୁଖରେ। ନିଜ ହାତରେ ଗୋଟିଏ ଗୋଟିଏ କୋଳି ବାଛି ପ୍ରଥମେ ନିଜେ ଚାଖି ଚାଖି ମିଠା ପାଚିଲା

କୋଳ ବଢ଼ାଇ ଦେଉଥିଲା ଶ୍ରୀରାମଙ୍କ କର କମଳକୁ । ଭକ୍ତି କ୍ଷୁଧାର୍ତ୍ତ ଶ୍ରୀରାମ ସେ ଉଚ୍ଛିଷ୍ଟ କୋଳିଗୁଡ଼ିକ ଗୋଟିଏ ପରେ ଆଉ ଗୋଟିଏ ଧୀରେ ଖାଇ ଚାଲିଥାନ୍ତି । ପଛରେ ଆଶ୍ଚର୍ଯ୍ୟ ବିସ୍ଫୁରିତ ନୟନରେ ଲକ୍ଷ୍ମଣ ଖାଲି ଚାହିଁ ରହିଥିଲେ । ରଘୁପତି ଏ କଣ କରୁଛନ୍ତି । ଶବରୀର ଉଚ୍ଛିଷ୍ଟ ବିନା ଦ୍ୱିଧାରେ ଆନନ୍ଦ ସହ ଆସ୍ତେ ଆସ୍ତେ ଚାଖି ଚାଖି ଖାଇ ଚାଲିଛନ୍ତି ଯେ ! ଲକ୍ଷ୍ମଣ କେମିତି ଜାଣିବେ ଯେ ଭକ୍ତ ବତ୍ସଳ ରାମଚନ୍ଦ୍ର କୋଳି ଖାଉନାହାନ୍ତି । ଭକ୍ତିକୁ ହିଁ ଭୋଗ କରୁଛନ୍ତି । ଗୀତାର ନବମ ଅଧ୍ୟାୟର ଷଡ଼ବିଂଶତି ଶ୍ଳୋକରେ ଭଗବାନ କହିଛନ୍ତି-

"ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରୟଚ୍ଛତି ।
ତଦହଂ ଭକ୍ତ୍ୟାପହୃତମଶ୍ନାମି ପ୍ରୟତାତ୍ମନଃ ।।୯-୨୭ ।।

ସେମିତି ଆଉ ଥରେ ଦ୍ୱାପର ଯୁଗରେ ହୋଇଥିଲା ଦାସୀ ପୁତ୍ର ବିଦୁରଙ୍କ ଅନୁରୋଧ ରକ୍ଷା କରି ଥିବାବେଳେ ।

ଦୁର୍ଯ୍ୟୋଧନଙ୍କ ରାଜସଭାକୁ ଆସିଥିଲେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ପକ୍ଷରୁ ଶାନ୍ତି ପ୍ରସ୍ତାବ ଧରି ପାଣ୍ଡବ ପାଞ୍ଚଭାଇଙ୍କୁ ପାଞ୍ଚଖଣ୍ଡି ଗାଁ ବା ପଡ଼ା ଦେବାକୁ ଅନୁରୋଧ ଜଣାଇ । ଦୁର୍ଯ୍ୟୋଧନଙ୍କ ପ୍ରଶ୍ନଥିଲା, "କେଶବ, ଏ ପାଣ୍ଡବମାନେ କିଏ ? ଜଣେ ଧର୍ମଙ୍କ ପୁତ୍ର, ଜଣେ ବାୟୁ ପୁତ୍ର, ଜଣେ ଇନ୍ଦ୍ରଙ୍କ ପୁତ୍ର ତ ଆଉ ଦୁଇଜଣ ଅଶ୍ୱିନୀକୁମାରଙ୍କ ପୁତ୍ର । ଆଉ ପାଣ୍ଡବ ପାଣ୍ଡବ କଣ ହେଉଛ ? ପଣ୍ଡୁଙ୍କ ପୁତ୍ର ସିନା ରାଜ୍ୟ ପାଇବା କଥା ?" ରାଜସଭା ସ୍ତବ୍ଧ ହୋଇଗଲା, ନିଶ୍ଚଳ ନିଶବ୍ଦ ହୋଇ ଯାଇଥିଲା ଦୁର୍ଯ୍ୟୋଧନଙ୍କ କ୍ରୁର ଇଙ୍ଗିତର ଅର୍ଥ ବୁଝିପାରି । ଭୀଷ୍ମ ପିତାମହ, ଆଚାର୍ଯ୍ୟ ଦ୍ରୋଣ ମଧ୍ୟ ଏ ଅଶାଳୀନ, ରୁଚିହୀନ ମନ୍ତବ୍ୟରେ ବ୍ୟଥିତ ହୋଇ ଯାଇଥିଲେ । କେଶବ ଜନାର୍ଦ୍ଦନ ଦଣ୍ଡାୟମାନ ହୋଇ କହିଲେ, ଆଉ ଗୋଟିଏ ନିଷ୍ଠୁର ସତ୍ୟ । ଏହା ଦୁର୍ଯ୍ୟୋଧନଙ୍କ ପ୍ରଶ୍ନର ସମୁଚିତ ଉତ୍ତର ଥିଲା । ଶ୍ରୀକୃଷ୍ଣ ହସ୍ତିନାପୁରର ରାଜ ସିଂହାସନରେ ଆସୀନ ଅନ୍ଧ ଧୃତରାଷ୍ଟ୍ରଙ୍କ ଆଡ଼କୁ ନିର୍ଦ୍ଦେଶ କରି ଭରା ରାଜ ସଭାରେ ପଚାରିଲେ, "ଦୁର୍ଯ୍ୟୋଧନ, ହସ୍ତିନାପୁରର ରାଜସିଂହାସନାରୂଢ଼ ରାଜା ଧୃତରାଷ୍ଟ୍ର କଣ ତାଙ୍କ ପିତା ବିଚିତ୍ରବୀର୍ଯ୍ୟଙ୍କ ପୁତ୍ର ? ହସ୍ତିନାପୁର ରାଜ ସିଂହାସନର ପରମ୍ପରା ହେଉଛି, ପିତାଙ୍କ ଜନ୍ମିତ ପୁତ୍ର ରାଜସିଂହାସନ ପାଇ ନ ଥାନ୍ତି । ଧୃତରାଷ୍ଟ୍ର ବ୍ୟାସଦେବଙ୍କ ପୁତ୍ର ।" ଏ କଥାରେ ରାଜସଭା ଆହୁରି ନିଥର ନିଶବ୍ଦ ହୋଇ ଯାଇଥିଲା । ଶ୍ରୀକୃଷ୍ଣ ସେ ଦିନ ଦୁର୍ଯ୍ୟୋଧନଙ୍କ ଅତିଥି ହେବା ପ୍ରଶ୍ନ ଆଉ ନଥିଲା । ସେ ଦିନ ବିଦୁର କରିଥିଲେ

ଶ୍ରୀକୃଷ୍ଣଙ୍କୁ ନଗର ବାହାରେ ଥିବା ନିଜ କୁଟୀରକୁ, ମଧ୍ୟାହ୍ନ ଭୋଜନ ନିମନ୍ତେ। ଭକ୍ତ ବତ୍ସଳ ଶ୍ରୀକୃଷ୍ଣ ହସ୍ତୀନାପୁର ରାଜମହଲର ଆତିଥେୟତା ପରିତ୍ୟାଗ କରି ଭକ୍ତ ବିଦୁରଙ୍କ ଅନୁରୋଧ ରକ୍ଷା କରିଥିଲେ।

ବିଦୁର-ପତ୍ନୀ ପତିଙ୍କ ସାଥୀରେ ଶ୍ରୀକୃଷ୍ଣଙ୍କୁ ନିଜ ପର୍ଣ୍ଣ କୁଟୀରରେ ଦେଖି ଭକ୍ତି ଓ ଆନନ୍ଦର ଅତିଶଯ୍ୟରେ ଆତ୍ମହରା ହୋଇ ପଡ଼ିଲେ। ସସ୍ତ୍ରମେ ଅଭ୍ୟର୍ଥନା ପରେ ଆସନ ଓ ଜଳ ପ୍ରଦାନ କରି ଶ୍ରୀକୃଷ୍ଣଙ୍କ ଧୂଳି ଧୂସରିତ ପଦ ଧୌତ କରି ନିଜ ଲମ୍ବ କୃଷ୍ଣ କେଶ ଗୁଚ୍ଛରେ ସେ ପଦଦ୍ୱୟ ମାର୍ଜନ କରିଥିଲେ। ସୁଖାସନରେ ଆସୀନ ଶ୍ରୀକୃଷ୍ଣଙ୍କ ଭୋଜନ ପୂର୍ବରୁ ଅଳ୍ପ କେତେ ଫେଣା ପାଚିଲା କଦଳୀ ଆଣି ଥୋଇଲେ। ଭଲମନ୍ଦ ବୁଝା ବୁଝି କରୁ କରୁ ଭକ୍ତି ଓ ଆନନ୍ଦର ଆତିଶଯ୍ୟରେ ଅଧୀରା ବିଦୁର-ପତ୍ନୀ ଅନ୍ୟମନସ୍କ ଭାବରେ କଦଳୀଗୁଡ଼ିକ ଫୋପାଡ଼ି ଚୋପା ଗୋଟିକ ପରେ ଗୋଟିଏ ଶ୍ରୀକୃଷ୍ଣଙ୍କ କର କମଳକୁ ବଢ଼ାଇ ଦେଉଥିଲେ। ଭଗବାନ ଶ୍ରୀକୃଷ୍ଣ ବିନା ବାକ୍ୟ ବ୍ୟୟରେ ଚୋପାଗୁଡ଼ିକ ଖାଇ ଚାଲିଥିଲେ ଆନନ୍ଦରେ। ଆଉ ଦେଖୁଥିଲେ ବିଦୁର-ପତ୍ନୀଙ୍କର ଭକ୍ତି ଓ ଆନନ୍ଦଭରା ମୁଖଶ୍ରୀର ଅପରୂପ ଜ୍ୟୋତି ଓ ସୌନ୍ଦର୍ଯ୍ୟ। ଭଗବାନ ଭକ୍ତ ଦ୍ୱାରା ପ୍ରଦତ୍ତ ଭୋଗର ଖାଦ୍ୟସାର, ପ୍ରୋଟିନ୍ ବା ଶ୍ୱେତସାର ଗ୍ରହଣ କରନ୍ତି ନାହିଁ। ସେଥିରେ ମିଶ୍ରିତ ଭକ୍ତି ମାତ୍ରକୁ ଉପହୃତ ବା ଧୀରେ ସାଉଁଟି ସାଉଁଟି ଗ୍ରହଣ କରିଥାନ୍ତି ଭକ୍ତି ଭୋକିଲା ଶ୍ରୀଭଗବାନ। ସେହି କଥା ଘଟିଥିଲା ତ୍ରେତୟା ଯୁଗରେ ଶବରୀର ଦତ୍ତ ନୈବେଦ୍ୟରେ। ରାମ କୋଳି ଭିତରେ କେବଳ ଭକ୍ତିକୁ ଗ୍ରହଣ କରୁଥିଲେ। ଅଥଚ ଲକ୍ଷ୍ମଣ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ।

ସ୍ୱାମୀ-ପରିତ୍ୟକ୍ତା ପୁରୁଷ ସମାଜ ଦ୍ୱାରା ଲୁଣ୍ଠିତା ଓ ଅପମାନିତା ପତିତା ଅହଲ୍ୟା, ପତିତ କୈବର୍ତ୍ତ ଓ ଆଦିମ ବନଜାତିର (ଆଜିକାଲି ଯାହାଙ୍କୁ ଅନୁସୂଚୀତ ଜନଜାତି ବୋଲି ଆଖ୍ୟା ଦେଇ ସମାଜର ମୂଳ ସ୍ରୋତରୁ ବିଚ୍ଛିନ୍ନ କରି ରଖିବାର ଚେଷ୍ଟା ସ୍ୱାଧୀନତା ପରେ ଭାରତରେ ଚାଲୁ ହୋଇଛି।) ସେପରି ପତିତ ଶ୍ରେଣୀର ଭକ୍ତମାନେ ଶ୍ରୀରାମଙ୍କ ଦ୍ୱାରା ପରମ ଆଦରରେ ଗୃହୀତ ହୋଇଥିଲେ। ଶ୍ରୀରାମ ଅଯୋଧ୍ୟା ରାଜମହଲର ଅନ୍ତଃପୁରୀର ଅଭ୍ୟନ୍ତର ଭିତରୁ ଘଞ୍ଚ ଜଙ୍ଗଲ ଭିତରେ ନିଜ ଭକ୍ତମାନଙ୍କର ଦର୍ଶନ କରି ଆମ ନିମନ୍ତେ ଆଦର୍ଶ ଚରିତ୍ରର ଗୋଟିଏ ଅନବଦ୍ୟ ଦିଗ ପ୍ରଦର୍ଶନ କରିଯାଇଛନ୍ତି। ଏଥର ଫେରିଯିବା ଆଉଥରେ ରାମାୟଣ ବର୍ଣ୍ଣିତ ଭକ୍ତମାନଙ୍କ ନିକଟକୁ ଆସନ୍ତୁ।

## ଚତୁର୍ଥ ଭକ୍ତ ହନୁମାନ

ଚତୁର୍ଥ ଭକ୍ତ ହେଉଛନ୍ତି ଆମର ଚର୍ଚ୍ଚିତ ପରମ ପୂଜ୍ୟ ହନୁମାନ। ହନୁମାନ ଶ୍ରୀରାମଙ୍କ ସେବକ ଭକ୍ତ, ଭୃତ୍ୟ ଭକ୍ତ। ଆଗରୁ ବର୍ଣ୍ଣନା କରାଯାଇଥିବା ତିନିଜଣ ଭକ୍ତ ଥିଲେ କେବଳ ଭକ୍ତ। ଭୃତ୍ୟ ବା ସେବକର ପ୍ରଭୁଙ୍କ ନିକଟରେ ସ୍ୱତନ୍ତ୍ର ସ୍ଥାନ ରହିଛି। ପ୍ରଭୁଙ୍କର କୌଣସି କାର୍ଯ୍ୟ ସେବକ ନିମନ୍ତେ ବଡ଼ ବା ଛୋଟ ନୁହେଁ। କାର୍ଯ୍ୟର ସଫଳ ସମାପ୍ତି ପରେ ପ୍ରଭୁଙ୍କ ସନ୍ତୋଷ ଓ ଆନନ୍ଦ ଅପେକ୍ଷା ସେବକର ହିଁ ଆନନ୍ଦ ଓ ସନ୍ତୋଷ ବେଶୀ ହୋଇଥାଏ।

ପ୍ରଭୁଙ୍କ ଆଦେଶ ମିଳିବା ପରେ ହିଁ ସେବକ ବା ଭୃତ୍ୟ ନିମନ୍ତେ କାର୍ଯ୍ୟ ଆରମ୍ଭ ହୋଇଥାଏ। କାର୍ଯ୍ୟର ସଫଳ ଓ ସମ୍ପୂର୍ଣ୍ଣ ସମାପ୍ତି ପର୍ଯ୍ୟନ୍ତ ସେବକ ନିମନ୍ତେ ଅନ୍ୟ ବିଷୟ ଚିନ୍ତା ବି କରିବାକୁ ସମୟ ନଥାଏ । ସେ ସର୍ବଦା "ରାମ କାଜ୍ କରିବେ କୋ ଆତୁର।" (ଚୌପାଇର ସପ୍ତମ ପଦ) ସେହି ସେ ଭକ୍ତ ହନୁମାନ ଏକାଧାରରେ ମହାବୀର, ବଜ୍ର ଅଙ୍ଗବାଲା। ମହାବୀର ବଜରଙ୍ଗବାଲୀ, ଯେ ମନ ବଚନ କ୍ରମ ବା ମନ, କଥା ଓ କର୍ମ - ତିନିଗୋଟିକୁ ଏକାଧାରାରେ, ଏକାଗ୍ରତା ସହକାରେ ରାମଙ୍କ ଇଚ୍ଛାକୁ ପାଳନ କରିବା ନିମନ୍ତେ ସଦା ତତ୍ପର। ସେପରି ଭକ୍ତ-ଭୃତ୍ୟ ଭଗବାନ ରାମଙ୍କ ସଖା, ବନ୍ଧୁ ଓ ଉପଦେଷ୍ଟା ମଧ। ରାମଙ୍କ ଧ୍ୱଜା ଓ ବାହକ ମଧ। ଶ୍ରୀହନୁମାନଙ୍କ ସ୍ଥାନ ସ୍ୱତନ୍ତ୍ର।

ବିଷ୍ଣୁ ଭକ୍ତଙ୍କ ମଧ୍ୟରେ ଶ୍ରୀମଦ୍ ଭାଗବତରେ ଆମେ ସାକ୍ଷାତ୍ ପାଉ ନାରଦ, ଗରୁଡ଼, ଧ୍ରୁବ, ପ୍ରହ୍ଲାଦ ଓ ବଳୀ ରାଜାଙ୍କର। ନାରଦ ଶ୍ରୀକୃଷ୍ଣଙ୍କ ମନ, ଶ୍ରୀକୃଷ୍ଣଙ୍କ ଇଚ୍ଛା ପୂରଣ ନିମନ୍ତେ ପୃଥିବୀର ସର୍ବତ୍ର ସର୍ବଦା ପ୍ରଦକ୍ଷିଣ କରୁଥାଆନ୍ତି। ମନରେ ସର୍ବଦା ସନ୍ତୋଷ ଓ ସ୍ପୃହାହୀନ ହୋଇ ଶରୀର ଦ୍ୱାରା କେବଳ ନାମ ସଂକୀର୍ତ୍ତନ କରି ଗର୍ବ ଓ ଅହଙ୍କାରକୁ ତ୍ୟାଗ କରି ପୃଥିବୀ ପର୍ଯ୍ୟଟନ କରିବା ନାରଦଙ୍କର କର୍ମ। (ଭାଗବତ, ୧ମ ସ୍କନ୍ଧ, ୩ୟ ଅଧ୍ୟାୟ) ନାରଦ ସ୍ୱୟଂ ଭକ୍ତ ଶ୍ରେଷ୍ଠ। ତାଙ୍କର ଆଉ ଗୋଟିଏ ବଡ଼ ଗୁଣ ହେଲା, ସେ ଭକ୍ତମାନଙ୍କର ଗୁରୁ। ଭକ୍ତମାନଙ୍କୁ ଭଗବାନଙ୍କ ନିକଟରେ ପହଞ୍ଚାଇ ଦେବା ନିମନ୍ତେ ନାରଦ ସଦା ତତ୍ପର। ବ୍ୟାସ ମହର୍ଷିଙ୍କୁ ଭକ୍ତି ବିଷୟକ ଗ୍ରନ୍ଥ ରଚନା କରିବାକୁ ନାରଦଙ୍କ ପ୍ରବର୍ତ୍ତନାରୁ ଭାଗବତ ଗ୍ରନ୍ଥର ଆରମ୍ଭ। ସେ ଧ୍ରୁବଙ୍କୁ ମଧ ଦ୍ୱାଦଶାକ୍ଷର ମନ୍ତ୍ର ଦୀକ୍ଷା ଦାନ କରି ଧ୍ରୁବଙ୍କର ଦିଗ୍‌ଦର୍ଶନ ପଥ ସରଳ ସୁଗମ କରିବା ବିଷୟ ଭାଗବତରେ ଉଲ୍ଲେଖ ଅଛି। ନାରଦ ହିଁ ପ୍ରହ୍ଲାଦଙ୍କୁ ହରି ଭକ୍ତିର ସ୍ୱାଦ ମାତାଙ୍କ ଗର୍ଭସ୍ଥ ଥିବାବେଳେ ଚଖାଇଥିଲେ।

ଶାସ୍ତ୍ର ଓ ପୁରାଣ ଗ୍ରନ୍ଥମାନଙ୍କରେ ନାରଦଙ୍କ ବ୍ୟତୀତ ଅନ୍ୟ କୌଣସି ଭକ୍ତ ପ୍ରବରଙ୍କର ଏହି ଦିଗଟି ଶ୍ରୁତିଗୋଚର ହୁଏ ନାହିଁ।

କିନ୍ତୁ ହନୁମାନ ଚାଳିଶାରେ ତୁଳସୀ ଦାସ ହନୁମାନଙ୍କର ମଧ୍ୟ ଏହି ଗୁଣଟି ପ୍ରତି ବିଶେଷ ଦୃଷ୍ଟି ଦେଇଛନ୍ତି।

"ସାଧୁ ସନ୍ଥକେ ତୁମ ରଖୱାରେ
ଅସୁର ନିକନ୍ଦନ ରାମ ଦୁଲାରେ।। (ଚୌପାଇ ବତ୍ରିଶ)

## ହନୁମତ୍ ଗୁରୁ

ଏଥି ନିମନ୍ତେ ରାମାୟଣର ଅନ୍ୟ ଭକ୍ତମାନଙ୍କ ତୁଳନାରେ ହନୁମାନ, ଭକ୍ତମାନଙ୍କ ନିମନ୍ତେ ଉତ୍କୃଷ୍ଟ ଗୁରୁ ଓ ମନ୍ତ୍ରଦାତା।

"ତୁହ୍ମାରୋ ମନ୍ତ୍ର ବିଭୀଷଣ ମାନା,
ଲଙ୍କେଶ୍ୱର ଭଏ ସବ ଜଗ୍ହ ଜାନା। (ଚୌପାଇ ୧୨)

ଶ୍ରୀହନୁମାନ ଚାଳିଶାର ଅନ୍ୟ ଦୋହାରେ ତୁଳସୀ ଦାସ ଶ୍ରୀହନୁମାନଙ୍କୁ ଗୁରୁ ରୂପରେ ବର୍ଣ୍ଣନା କରି ତାଙ୍କ ସହ ପାଠକର ସମ୍ପର୍କକୁ ପ୍ରଥମେ ସ୍ଥିର କରି ଦେଇଛନ୍ତି। ଗୁରୁ ଶବ୍ଦର "ଗୁ" ଅକ୍ଷରର ଅର୍ଥ ଅନ୍ଧକାର, ତମସ୍ ଓ "ରୁ" ଅକ୍ଷରର ଅର୍ଥ ଆଲୋକ, ଜ୍ୟୋତି। ଶ୍ରୁତି ବାକ୍ୟ "ତମସୋ ମାଂ ଜ୍ୟୋତିର୍ଗମୟ"କୁ ମାତ୍ର ଗୋଟିଏ ସରଳ ଦୁଇ ଅକ୍ଷର ବିଶିଷ୍ଟ ପଦ ଦ୍ୱାରା ସୀମିତ ବର୍ଣ୍ଣନା କେବଳ ସଂସ୍କୃତ ଭାଷାରେ ହିଁ ସମ୍ଭବ।

ହନୁମତ୍ ଗୁରୁଙ୍କ ପାଦ ଧୂଳି ଦ୍ୱାରା ପାଠକ ମୂଳରୁ ନିଜ ମନ ଆଇନାକୁ ମଜା ମଜି, ପୋଛା ପୋଛି କରି ସୁଧାରି ଦେବାକୁ ଗୋସ୍ୱାମୀ ତୁଳସୀ ଦାସ ଶ୍ରୀହନୁମାନ ଚାଳିଶାରେ ପ୍ରତିପାଠକକୁ ସ୍ମରଣ କରାଇ ଦେଇଛନ୍ତି -

"ଶ୍ରୀ ଗୁରୁ ଚରଣ ସରୋଜ ରଜ, ନିଜ ମନୁ ମୁକୁରୁ ସୁଧାରି।"

ତାହାପରେ ହନୁମାନଙ୍କ ପ୍ରଭୁ ରଘୁବର ରାମଚନ୍ଦ୍ରଙ୍କ ଯଶୋଗାନ ଆରମ୍ଭ କରାଯିବ। ସେହି ରାମ ଯଶ ପାଠକକୁ ମାଗିବା ପୂର୍ବରୁ ଧର୍ମ, ଅର୍ଥ, କାମ ଓ ମୋକ୍ଷ - ଏହି ଚାରିଗୋଟି ଫଳ ପ୍ରଦାନ କରିଥାଏ।

"ବରନଉ ରଘୁବର ବିମଳ ଜସୁ, ଯୋ ଦାୟକୁ ଫଳଚାରି ।"

ତେଣୁ ହନୁମାନ ଚାଳିଶା ବାସ୍ତବିକ ରଘୁବର ଶ୍ରୀରାମଙ୍କର ବିମଳ ନିର୍ମଳ ଯଶୋଗାନ । ସେଥିରେ ରହିଥିବା ହନୁମାନଙ୍କ କୀର୍ତ୍ତି ଓ କାର୍ଯ୍ୟ ମଧ୍ୟ ସେହି ରଘୁବରଙ୍କ ଯଶୋଗାନ । ଭୃତ୍ୟ ସେବକର କାର୍ଯ୍ୟର ସଫଳତା ଓ କୀର୍ତ୍ତି ପ୍ରଭୁଙ୍କର ଯଶୋଗାନ ଛଡ଼ା ଆଉ କଣ ହୋଇପାରେ ? ରାମ କୃପା ବିନା ହନୁମାନଙ୍କ କୀର୍ତ୍ତି କଣ ସମ୍ଭବପର ହୋଇଥାନ୍ତା କି ?

ଏହାପରେ ତୁଳସୀ ଦାସ ପାଠକର ମନ ଓ ଦୃଷ୍ଟିକୁ ଫେରାଇ ଆଣିଛନ୍ତି ଆଉ ଥରେ ହନୁମାନଙ୍କ ନିକଟକୁ । କାହିଁକି ? ପାଠକ ନିଜକୁ ଉଭୟ ବଳ ଓ ବୁଦ୍ଧିରେ ଅସମର୍ଥ ବୋଲି ଅନୁଭବ କରି ନିଜର ବଳ ଓ ବୁଦ୍ଧି ପାଇଁ ହନୁମାନଙ୍କ ଶରଣାଗତ ହେବା ନିମନ୍ତେ ଗୋସ୍ୱାମୀଜୀ ଉପଦେଶ ଦିଅନ୍ତି । ପ୍ରସଙ୍ଗତଃ ସମସ୍ତ ପ୍ରଧାନ ଭକ୍ତମାନଙ୍କ ମଧ୍ୟରୁ କେବଳ ନାରଦ ଓ ହନୁମାନ ହିଁ ଆଜନ୍ମ ବ୍ରହ୍ମଚାରୀ । ସଂଯମ ରକ୍ଷା କରି ବ୍ରହ୍ମଙ୍କଠାରେ ବିଚରଣଶୀଳ ହନୁମାନ ଓ ନାରଦ ଉଭୟେ ଋଷି ପଦବାଚ୍ୟ । ପ୍ରଭେଦ ଏତିକି ଯେ ନାରଦଙ୍କର ଭକ୍ତ ବୋଲି ବେଳେ ବେଳେ ଅହଙ୍କାର ଓ ଅଭିମାନ ଜାତ ହେବା କଥା ପୁରାଣରେ ଉଲ୍ଲେଖ ଅଛି । କିନ୍ତୁ -

"ସୁମତି କେ ସଙ୍ଗୀ କୁମତି ନିୱାର ।" (ଚୌପାଇ ୩ୟ ପଦ)

ହନୁମାନ କେବେ କେଉଁ କ୍ଷଣରେ ବି ଅହଙ୍କାର ଓ ଅଭିମାନର ସୀମା ଭିତରକୁ ପ୍ରବେଶ କରି ନାହାନ୍ତି । ମୁଁହରେ ସଦା ବିନୟ ଓ କୃତଜ୍ଞତା ଭାବ, ତୁଣ୍ଡରେ ସର୍ବଦା ରାମ ନାମ ଓ ଯଶୋଗାନ । ମନରେ ସର୍ବଦା "ରାମ ଲଖନ ସୀତା ବସିୟା ।" (ଚୋପାଇ ଅଷ୍ଟମ ପଦ) ଏହା ହିଁ ହନୁମାନଙ୍କ ଶ୍ରେଷ୍ଠତ୍ୱ ।

ଶ୍ରୀହନୁମାନ ଚାଳିଶାର ଚାଳିଶ ପଦ ଚୌପାଇ କେବଳ ରଘୁବୀର ରାମଙ୍କ ଯଶ ଓ ଶ୍ରୀହନୁମାନଙ୍କ ଅସମ୍ଭବ କୀର୍ତ୍ତି ରାଜିର ବିବରଣ । ଦ୍ୱିତୀୟ ତଥା ଅନ୍ତିମ ଦୋହା "ସଙ୍କଟ ହରନ ପବନ ତନୟ" ହନୁମାନଙ୍କ ନିକଟରେ ପାଠକ ହୃଦୟ ଓ ମନରେ "ମଙ୍ଗଳ ମୂରତି ସୁର ଭୂପ" ଭାବରେ ସଦା ସର୍ବଦା ବିରାଜମାନ କରିବାକୁ ଅନୁରୋଧ ତଥା ପ୍ରାର୍ଥନା ।

## ପାଠବିଧି ଓ ପରମ୍ପରା -

ତେଣୁ ହନୁମାନ ଚାଳିଶା ପାଠ ପରେ ଓ ପୂର୍ବରୁ ପାଠକକୁ ପ୍ରଥମେ ଶ୍ରୀରାମଙ୍କୁ ସ୍ମରଣ କରିବାକୁ ହୁଏ। କଥାରେ ଅଛି -

"କହିଯୋଗୀ ହନୁମାନ ହମାରା ରାମଜୀକେ ରାମ ରାମ।"

"ଶ୍ରୀରାମ ଜୟରାମ ଜୟ ଜୟ ରାମ।"

ଏତିକି କହି ଶ୍ରୀହନୁମାନ ଚାଳିଶାର ଆଦ୍ୟ ଦୋହାର ଚାରିପଦ, ଦୁଇଥର ଉଚ୍ଚ ସ୍ୱରରେ ଗାନ କରିବା ପରେ ଚୌପାଇର ଚାଳିଶ ପଦକୁ ଥରେ ଥରେ ଉଚ୍ଚ ସ୍ୱରରେ ବା ମନେ ମନେ ଯେପରି ବି ହେଉ ଗାଇବାକୁ ପଡ଼େ। ଶେଷରେ ଅନ୍ତିମ ଦୋହାକୁ ଦୁଇଥର ଉଚ୍ଚସ୍ୱରରେ ଗାନ କରିବାକୁ ହୁଏ। ଏହି ବିଧିରେ ପାଠ କରିବା ପରମ୍ପରା କାଶୀତଳ ବାହିନୀ ପାବନ ଗଙ୍ଗା ନଦୀ କୂଳରେ ସଙ୍କଟ ମୋଚନ ହନୁମାନ ମନ୍ଦିରରେ ସୃଷ୍ଟି ହୋଇଥିଲା ବୋଲି ପ୍ରବାଦ ଅଛି। ପ୍ରଭାତ ବା ସନ୍ଧ୍ୟା ଆରତୀ ସମୟରେ ସମବେତ ଶତ ସହସ୍ର ଭକ୍ତଙ୍କ ସହିତ ସ୍ୱର ମିଳାଇ ଯେ ଥରେ ହେଲେ ବି ହନୁମାନ ଚାଳିଶା ପାଠ କରିଥିବ, ତାର ସେ ଅବିସ୍ମରଣୀୟ ସ୍ମୃତି ଜୀବନରେ ବାରମ୍ବାର ମନରେ ଭକ୍ତି ଓ ଶ୍ରଦ୍ଧା ଜାଗ୍ରତ କରାଉଥିବ। ଆରତୀର ତାଳେ ତାଳେ ଚାପି ଉଠୁଥିବା ଦୀପ ଶିଖା ସହ ସଙ୍କଟ ହରଣଙ୍କ ଉଦ୍‌ଭାସିତ ମୁଖମଣ୍ଡଳରୁ ଶାନ୍ତ ଓ ଆଶୀଷ ଧାରା ଝରି ଝରି ସମବେତ ସମସ୍ତ ଭକ୍ତଙ୍କ ହୃଦୟ ଉଲ୍ଲସିତ, ଆଶ୍ୱସ୍ତ ଓ ଅନୁପ୍ରାଣିତ ହେବା ଅନୁଭୂତିର ସୁଗନ୍ଧ ଜୀବନକୁ ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ସୁରଭିତ କରିଦିଏ।

## ବହୁରୂପୀ ହନୁମାନ :-

ହନୁମାନଙ୍କର ଗୋଟିଏ ରୂପ ନୁହେଁ। କେତେବେଳେ କେଉଁ ରୂପ ଧରନ୍ତି ତାହା କାହାରିକୁ ଗୋଚର ନୁହେଁ। ସେ ସବୁ ସମୟରେ "ମହାବୀର ବିକ୍ରମ ବଜ୍ର ଅଙ୍ଗ" (ତୃତୀୟ ଚୌପାଇ ପଦ) କେତେବେଳେ "କଞ୍ଚନ ବରନ", "କାନନ କୁଣ୍ଡଳ", "କୁଞ୍ଚିତ କେଶା" ହୋଇ ସୁବେଶା। (ଚୌପାଇର ଚତୁର୍ଥ ପଦ) କେତେବେଳେ ଦ୍ୱିଜ ରୂପ "କାନ୍ଧେ ମୁଞ୍ଜଜନେଉ ସାଜେ" (ଚୌପାଇର ପ୍ରଥମ ପଦ) ଏହି ଦ୍ୱିଜ ରୂପରେ ଶ୍ରୀରାମ ଓ ଲକ୍ଷ୍ମଣଙ୍କ ସହ ପ୍ରଥମ ମିଳନ। ମନୁଷ୍ୟ ମାତୃଗର୍ଭରୁ ପ୍ରଥମେ ଜନ୍ମ ନେଇଥାଏ,

ଅନ୍ୟ ସବୁ ଜୀବଜନ୍ତୁଙ୍କ ପରି। କିନ୍ତୁ ବିଦ୍ୟାରମ୍ଭ କରିବା ପାଇଁ ଗୁରୁଗୃହକୁ ଯିବା ବେଳେ ତାର ଦ୍ୱିତୀୟ ଜନ୍ମ ହୋଇଥାଏ। ଆମ୍ବ ଟାକୁଆରୁ ଯେଉଁ ଆମ୍ବ ଅଙ୍କୁରୋଦ୍‌ଗମ ହୁଏ ସେଥିରେ ଭଲ ଜାତିଆ ଆମ୍ବ ଫଳିବା ନିମନ୍ତେ ଅନ୍ୟ ଗୋଟିଏ ଗଛର କୋମଳ ଡାଳଟିଏ କଲମି କରିବା ପରି। ସେମିତି ଭଲ ମଣିଷଟିଏ ହେବା ପାଇଁ ବିଦ୍ୟାଭ୍ୟାସ କରିବାକୁ ହୋଇଥାଏ। ହିନ୍ଦୁଧର୍ମରେ ଏହି ବିଦ୍ୟାରମ୍ଭକୁ "ଉପନୟନ" ବା ନିକଟକୁ ଆଣିବା ବୋଲି କୁହା ଯାଇଥାଏ। ଏହାକୁ ବ୍ରତ ବା ଏକ ନିର୍ଦ୍ଦିଷ୍ଟ ନିୟମ ପାଳନ ନିମନ୍ତେ "ପ୍ରତିଜ୍ଞା" ବୋଲି ମଧ୍ୟ କୁହାଯାଇଥାଏ। ସବୁ ଜାତିର ହିନ୍ଦୁମାନଙ୍କୁ ପଇତା ବା ଜନେଉ ଧାରଣ କରିବାକୁ ହୋଇଥାଏ। ପଇତା ବା ଜନେଉ ସୂତା 'ମୁଞ୍ଜ' ନାମକ ବୃକ୍ଷ ତନ୍ତୁରୁ ନିର୍ମିତ ହୁଏ। ତେଣୁ କାନ୍ଧେ ମୁଞ୍ଜ ଜନେଉ ସାଜି ଦ୍ୱିଜ ବେଶ ଧାରଣ କରିବା ବେଳେ ସୁବର୍ଣ୍ଣ ବର୍ଣ୍ଣ ଦେହ, କୁଞ୍ଚିତ କେଶ ଓ କାନରେ ସୁନା କୁଣ୍ଡଳ ଧାରଣ କରି ହନୁମାନ ଭୟଭୀତ ସୁଗ୍ରୀବଙ୍କର ଚର ହୋଇ ଶ୍ରୀରାମଙ୍କ ପରିଚୟ ଜାଣିବା ନିମନ୍ତେ ଋଷ୍ୟମୁକ ପର୍ବତ ପାଦ ଦେଶରେ ଶ୍ରୀରାମଙ୍କ ସହ ସାକ୍ଷାତ କରିଥିଲେ। ହନୁମାନଙ୍କ ପାଣ୍ଡିତ୍ୟ ଓ ପ୍ରଶ୍ନ କରିବା ଶୈଳୀରେ ଶ୍ରୀରାମ ମୁଗ୍ଧ ହୋଇ ଯାଇଥିଲେ ବୋଲି ବାଲ୍ମିକୀ କହନ୍ତି। କିନ୍ତୁ ପ୍ରଥମ ପରିଚୟ ପରେ ପରେ ହନୁମାନ ବୀରବେଶରେ "ହାତ ବଜ୍ର ଔର ଧ୍ୱଜା ଧରି ବିରାଜମାନ ହେଲେ। ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ଦୁଇ କାନ୍ଧରେ ବସାଇ ସୁଗ୍ରୀବଙ୍କ ନିକଟକୁ ନେଇଯାଇଥିଲେ ହନୁମାନ। ଶ୍ରୀରାମଙ୍କ ବାହନ ହେବା ଗୌରବ, ଏହା ହନୁମାନଙ୍କ ନିମନ୍ତେ ପ୍ରଥମ ଥର। ସମଗ୍ର ରାମାୟଣରେ ହନୁମାନ ମାତ୍ର ଦୁଇଥର ଶ୍ରୀରାମଙ୍କ ବାହନ ହୋଇଥିଲେ। ରାବଣ ସହ ଯୁଦ୍ଧ କରିବା ବେଳେ ରାବଣ ରଥାରୂଢ଼ ହୋଇ ଯୁଦ୍ଧ କରୁଥିଲେ। କିନ୍ତୁ ଶ୍ରୀରାମ ତଳେ ଠିଆ ହୋଇ ରାବଣ ସହିତ ଯୁଦ୍ଧ କରିବା ପ୍ରଭୁ-ଭୃତ୍ୟ ବା ସହ୍ୟ କରି ପାରିଥାନ୍ତେ କିପରି ? ସେ ଶ୍ରୀରାମଙ୍କ ଅନୁମତି ପ୍ରାର୍ଥନା କରି ତାଙ୍କ ବାହନ ହୋଇ ତାଙ୍କୁ ଆକାଶମାର୍ଗକୁ ନେଇ ସେଠାରେ ରାବଣ ସହ ଯୁଦ୍ଧ କରି ସେହି ଅପୂର୍ବ ଦୃଶ୍ୟରେ ସକ୍ରିୟ ଭାଗ ନେଇଥିଲେ। ଏମିତି ହନୁମାନ ଗରୁଡ଼ଙ୍କ ସମକକ୍ଷ ହୋଇ ଯାଇଛନ୍ତି। ଶ୍ରୀ ବିଷ୍ଣୁଙ୍କ ସଖା ଓ ବାହନ ଭାବରେ ଗରୁଡ଼ଙ୍କ ପ୍ରାଧାନ୍ୟ ପୁରାଣ ବର୍ଣ୍ଣିତ। ହନୁମାନ କିନ୍ତୁ ଭୃତ୍ୟ ଓ ସେବକ। ସେଥିରେ ହିଁ ତାଙ୍କର ଆନନ୍ଦ ଓ ଗୌରବ; କିନ୍ତୁ ଗର୍ବ ବା ଅହଙ୍କାର ନାହିଁ। ଭକ୍ତର ବିଶେଷତ୍ୱ ହେଲା ଅହଙ୍କାରର ଅଭାବ।

ହନୁମାନଙ୍କର ସେହି ଅହଙ୍କାରହୀନ ଭକ୍ତି ହିଁ ଅନ୍ୟ ସମସ୍ତ ବୈଷ୍ଣବ ଭକ୍ତଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଆଣି ଦେଇଛି । ଭୃତ୍ୟ ଓ ସେବକ ସ୍ତରରୁ ହନୁମାନଙ୍କୁ ଭ୍ରାତୃପର୍ଯ୍ୟାୟକୁ ନେଇ ଯାଇଛନ୍ତି ପ୍ରଭୁ ଶ୍ରୀରାମ । "ତୁମ ମମ ପ୍ରିୟ ଭରତହିଁ ସମ ଭାଇ ।" ବୋଲି ହନୁମାନଙ୍କୁ ବଡ଼ାଇ କରିଛନ୍ତି । (ଚୌପାଇର ଦ୍ୱାଦଶ ପଦ) ଭରତଙ୍କ ସହ ତୁଳନା କରି ଶ୍ରୀରାମ ହନୁମାନଙ୍କୁ ନିଜର ଅନ୍ୟ ଆଜନ୍ମ ସେବକ ଭାଇ ଲକ୍ଷ୍ମଣଙ୍କ ତୁଳନା ନକରି ହନୁମାନଙ୍କ ବିଦ୍‌ବତ୍ତା, ପାଣ୍ଡିତ୍ୟ ଓ ଜ୍ଞାନର ତୁଳନା ଭରତଙ୍କ ତ୍ୟାଗ ଓ ଜ୍ଞାନ ସହ ସମାନ କରି ଦେଇଛନ୍ତି । ଶ୍ରୀ ରଘୁବୀର ହନୁମାନଙ୍କୁ କେବଳ, "ହରଷି ଉର ଲାୟେ" (୧୧ ପଦ) ଦ୍ୱାରା ସନ୍ତୋଷ ଲାଭ ନକରି

"ସହସ୍ର ବଦନ ତୁହ୍ମାରେ ଯସ ଗାୱେ
ଅସ କହି ଶ୍ରୀପତି କଣ୍ଠ ଲଗାୱେଁ ।"

ଚୌପାଇର ତ୍ରୟୋଦଶ ପଦରେ । ସହସ୍ର ବଦନରେ ହନୁମାନଙ୍କର ଯଶୋଗାନ କରିବେ କେଉଁମାନେ ? ଶ୍ରୀରାମ ତାର ଗୋଟି ଗୋଟି ହିସାବ ଦେଇଛନ୍ତି ।

ସନକାଦିକ ବ୍ରହ୍ମାଦି ମୁନିସା,
ନାରଦ ସାରଦ ସହିତ ଅହିସା । (ଚୌପାଇ ଚଉଦ)

ହନୁମାନ, ନାରଦ, ସନତ୍ କୁମାର, ସନକ, ସନନ୍ଦନ, ବ୍ରହ୍ମା, ସରସ୍ୱତୀ ଓ ବାସୁକୀ ସମସ୍ତେ କାଳର ସୀମାର ବାହାରେ । କାହାରିକୁ ଜରା ବା ମରଣ ସ୍ପର୍ଶ ମଧ୍ୟ କରିପାରେ ନାହିଁ । ସମସ୍ତେ ସର୍ବଦା କୁମାର ଅବସ୍ଥାରେ ହିଁ ବିଦ୍ୟମାନ । ଏଣୁ ଶ୍ରୀରାମଙ୍କ ବର ଅନୁସାରେ ହନୁମାନଙ୍କ ଯଶ ଚିରସ୍ଥାୟୀ, କାଳ ଓ ମୃତ୍ୟୁର ସୀମାତୀତ ।

ହନୁମାନଙ୍କ ପ୍ରଶଂସା କେବଳ ଶ୍ରୀରାମ କରି ନାହାନ୍ତି, ତାଙ୍କ ନିଃସ୍ୱାର୍ଥପର ତ୍ୟାଗ ଓ ସେବାରେ ମୁଗ୍ଧ ହୋଇ ମୂଳ ପ୍ରକୃତି ସ୍ୱରୂପିଣୀ ମାୟା ରୂପ ଧାରିଣୀ ମାତା ଜାନକୀ ମଧ୍ୟ ହନୁମାନଙ୍କୁ, "ଅଷ୍ଟସିଦ୍ଧି ନୌନିଧି କେ ଦାତା, ଅସବର ଦୀନ ଜାନକୀ ମାତା ।" ଅଣିମା ଲଘିମା ଗରିମାଦି ଅଷ୍ଟ ସିଦ୍ଧି ଓ ହୀରା ମୋତି ମାଣିକ୍ୟ ଆଦି ନବନିଧି, ଯାହା ମାୟାକୁ ଗଭୀର ତର କରେ ଓ ମାୟାରୁ ଉଦ୍ଧାର ପାଇବା ନିମନ୍ତେ ମନୁଷ୍ୟ ପାଇଁ ଦୁଃସାଧ୍ୟ ହୋଇଯାଏ । ସେହି ଅଷ୍ଟସିଦ୍ଧି ଓ ନବନିଧି ଦାନ କରିବା କ୍ଷମତା ହନୁମାନଙ୍କର ଅତୁଳନୀୟ ।

ଏ ସଂସାରରେ ମାୟାର କୃତୀ କେବଳ ରୋଗ କି ପୀଡ଼ା ନୁହେଁ କି କେବଳ ସଙ୍କଟମୟ ସମୟ ନୁହେଁ। ମାୟାକୁ ଚିରସ୍ଥାୟୀ କରେ ଅଷ୍ଟସିଦ୍ଧି ଓ ନବନିଧି। ସାଧାରଣ ମନୁଷ୍ୟକୁ ମାୟା ଭିତରେ ବୁଲାଇ ବୁଲାଇ ଭୁଲେଇ ଭୁଲେଇ, ଦେହ ଓ ଇନ୍ଦ୍ରିୟମାନଙ୍କ ବନ୍ଧନ ଓ ଆକର୍ଷଣ ଭିତରେ ବାନ୍ଧି ରଖିବାକୁ ଅଷ୍ଟ ସିଦ୍ଧି ଓ ନବନିଧି ସୃଷ୍ଟି ହୋଇଥିବା ବେଳେ, ରୋଗ ପୀଡ଼ା ଓ ସଙ୍କଟମାନଙ୍କୁ କ୍ଷଣିକ ନିମନ୍ତେ ମାୟାଠାରୁ ଦୂରକୁ ନେଇ ଭଗବାନଙ୍କର ନିକଟତର କରିଦିଏ। ଆର୍ତ୍ତମାନବ ଚିତ୍କାର କରି ଭଗବାନଙ୍କୁ ସ୍ମରଣ କରେ ଆର୍ତ୍ତରୁ ଉଦ୍ଧାର ପାଇବା ନିମନ୍ତେ। ଗୀତାର ସପ୍ତମ ଅଧ୍ୟାୟର ଷୋଡଶ ଶ୍ଳୋକରେ ଭଗବାନ କହିଛନ୍ତି -

"ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ,
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀଚ ଭରତର୍ଷଭ।"

ଅର୍ଥାତ୍ ସୁକୃତୀ ଥିବା ଲୋକମାନେ ମୋତେ ଭଜନ କରନ୍ତି। ସେମାନଙ୍କୁ ଚାରିଭାଗରେ ବିଭକ୍ତ କରାଯାଇପାରେ। ଏକ ଆର୍ତ୍ତ, ସଙ୍କଟ ଭିତର ଦେଇ ଗତି କରୁଥିବା ମନୁଷ୍ୟ, ଯେ ହଠାତ୍ ଆବିଷ୍କାର କରେ ତାର "ନିସହାୟତା"। ସେ ସଙ୍କଟ ମନୁଷ୍ୟକୃତ ହୋଇପାରେ, ପଶୁକୃତ ହୋଇପାରେ ବା ପ୍ରକୃତିକୃତ ହୋଇପାରେ। ରୋଗ ଓ ପୀଡ଼ା ବେଳେ ସମସ୍ତେ ଭଗବାନଙ୍କ ଶରଣାପନ୍ନ ହୁଅନ୍ତି।

ଦ୍ୱିତୀୟ ଅର୍ଥାର୍ଥୀ। ଅର୍ଥ ଅର୍ଥାତ୍ ଧନ ନିମନ୍ତେ, ଯଶ ସମ୍ମାନ, ପୁତ୍ର କନ୍ୟା ଲାଭ ନିମନ୍ତେ, ସବୁ ପ୍ରକାର ଅର୍ଥ ନିମନ୍ତେ ଅର୍ଥାର୍ଥୀ।

ତୃତୀୟରେ ଜିଜ୍ଞାସୁ, (ଜ୍ଞାନ ପାଇଁ ବ୍ୟାକୁଳ ବ୍ୟକ୍ତିମାନେ) ଚତୁର୍ଥରେ ଜ୍ଞାନୀ। ଯାହାର ଜ୍ଞାନ ଲାଭ ହୋଇ ଯାଇଛି ଯେ ଜାଣି ପାରିଛି ଯେ, ଭଗବାନ ହିଁ ସବୁ। ଆଉ ସବୁ ମାୟା। ସେ ହିଁ ସବୁ କାରଣ ମାନଙ୍କର କାରଣ, କାର୍ଯ୍ୟମାନଙ୍କର କାର୍ଯ୍ୟ, ସେ ହିଁ ଉପାଦାନର କାରଣ, ନିମିତ୍ତ କାରଣ - ନିର୍ମାତା। ସେ ହିଁ ମାଟି, କୁମ୍ଭାର ଚକ, କୁମ୍ଭାର, ସେ ହିଁ ହାଣ୍ଡି ମାଠିଆ, ଆଟିକା, ସରା, ପଲମ - ସବୁ ସେ ହିଁ ଭଗବାନ। ବାକୀ ସମସ୍ତେ ମାଟି ଚକ କୁମ୍ଭାର, ମାଠିଆ ଆଦି ସମସ୍ତେ ଖାଲି ମାୟା ଭିତରେ ଘାରି ହେଉଛନ୍ତି - ମୁଁ କରିଛି, ମୁଁ ସୁନ୍ଦର, ମୁଁ ଅସୁନ୍ଦର। ଏହି ଅହଙ୍କାର ଓ ଅହମିକା ଭିତରେ ଭୁଲି ଯାଉଛନ୍ତି ଚିରନ୍ତନ ସତ୍ୟକୁ। ସବୁ ଭିତରେ ସବୁ ପଛରେ ସେ ହିଁ ଜଣେ। ସେ ହିଁ ଘଟଣା, ସେ ହିଁ

ଘଟିବା କ୍ରିୟା, ସେ ହିଁ ଘଟାନ୍ତି। ଏହି ଜ୍ଞାନ ଲାଭ କରିଥିବା ବିଜ୍ଞାନୀ ହିଁ ଭକ୍ତ ହୋଇଥାଏ। ପୁନଃ ପୁନଃ ଜିଜ୍ଞାସା ଦ୍ୱାରା ଏହି ଜ୍ଞାନ ଲାଭ ହୋଇଥାଏ। ତେଣୁ ଏ ସବୁ ଭିତରେ ଜିଜ୍ଞାସା ହିଁ ପଥ, ବାଟ, ଆଉ ସବୁ ପଥ ପାର୍ଶ୍ୱର ଦୃଶ୍ୟ। କେତେବେଳେ ରୋଗ, କେତେବେଳେ ପୀଡ଼ା, କେତେବେଳେ ସଙ୍କଟ, କେତେବେଳେ ଅର୍ଥ, କେତେବେଳେ କଣ ଦେଖାଯାଏ। ପଥ ଶେଷରେ ପଥିକ ପହଞ୍ଚେ ଭଗବାନଙ୍କ ନିକଟରେ। ଉତ୍ତାଳ ନୀଳ ସମୁଦ୍ରର ନାଚି ଉଠୁଥିବା ଲହରୀମାନ ଓ ବିଶାଳ ବାଲୁକା ରାଶି - ସବୁ ରହିଛି ପର୍ଯ୍ୟଟକର ମନକୁ ଜଗନ୍ନାଥଙ୍କଠାରୁ ଦୂରେଇ ରଖିବା ନିମନ୍ତେ। ଯେଉଁମାନେ ସମୁଦ୍ରର ସୌନ୍ଦର୍ଯ୍ୟରେ ବିଭୋର ହୋଇ ତାର ସୃଷ୍ଟିକର୍ତ୍ତା ଭଗବାନଙ୍କୁ ଭୁଲି ଯାଆନ୍ତି ସେମାନେ ପେଜ ଖାଇ ଭାତକୁ ଭୁଲିଗଲା ପରି ଠକି ଯାଆନ୍ତି ମାୟା ଦ୍ୱାରା।

ଏଥର ଫେରିଯିବା ଆଉଥରେ ହନୁମାନ ଚାଳିଶାକୁ। ହନୁମାନ "ଜ୍ଞାନ ଓ ଗୁଣର ସାଗର।" ତିନିଲୋକ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ, ଏ ତିନିଲୋକକୁ ଉଜ୍ଜ୍ୱଳ କରିଦିଅନ୍ତି ନିଜର ଜ୍ଞାନ ଓ ଗୁଣ ଦ୍ୱାରା। ତେଣୁ ସେ ଆମ ନିମନ୍ତେ ବନ୍ଦନୀୟ। ପ୍ରାର୍ଥନୀୟ। ସେ କପିସ। ଶ୍ରୀବିଷ୍ଣୁ ସହସ୍ର ନାମ ସ୍ତୋତରେ ଶ୍ରୀବିଷ୍ଣୁଙ୍କର ଗୋଟିଏ ନାମ ବୃଷାକପି। "ବୃଷାକପି ରମେୟାମ୍। କପିରବ୍ୟୟଃ, ସନାତ୍ ସନାତନ ନମଃ କପିଳଃ କପିରବ୍ୟୟଃ।"

ଶ୍ରୀରାମ ସହସ୍ର ନାମ ସ୍ତୋତ୍ରରେ ଶ୍ରୀରାମଙ୍କ ଗୋଟିଏ ନାମ "ସଦା ହନୁମଦାଶ୍ରିତ" ତୃତୀୟ ନାମ ଆଉ ଗୋଟିଏ - "ହନୁମତ୍ ପ୍ରଭୁରବ୍ୟୟଃ। ଏଥିରୁ ଜଣାଯିବ ଯେ ହନୁମାନଙ୍କ ସ୍ଥାନ ବିଷ୍ଣୁ ଭକ୍ତଙ୍କ ମଧ୍ୟରେ ଅଗ୍ରଗଣ୍ୟ।"

ପୁରୀରେ ଶ୍ରୀମନ୍ଦିର ମଧ୍ୟରେ ହନୁମାନଙ୍କ ମୂର୍ତ୍ତିର ପ୍ରାଧାନ୍ୟ ଦେଖିବାକୁ ମିଳେ। ଶ୍ରୀଜଗନ୍ନାଥଙ୍କର ଶ୍ରୀରାମ ଭାବରେ ଦଶରଥ ଓ କୌଶଲ୍ୟାଙ୍କୁ ଶ୍ରାଦ୍ଧ ଦାନ କରନ୍ତି। ଦେବୀ ଦୀପାବଳୀ ଉତ୍ସବରେ ଏବଂ ଶ୍ରୀରାମ ନବମୀ ମଧ୍ୟ ଶ୍ରୀମନ୍ଦିରରେ ସ୍ୱତନ୍ତ୍ର ଭାବରେ ପାଳିତ ହୁଏ। ତେଣୁ ମନେ ହୁଏ, ଓଡ଼ିଶା ଓ ଶ୍ରୀଜଗନ୍ନାଥ ଶ୍ରୀରାମ ଓ ଶ୍ରୀହନୁମାନଙ୍କ ସହ ଭାବବତ ଭାବରେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ। ତେଣୁ ହନୁମାନ ଚାଳିଶା ଯୁଗ ଯୁଗ ଧରି ଓଡ଼ିଶାର ବହୁଜନମାନଙ୍କ ଦ୍ୱାରା ଗୃହୀତ ହୋଇ ଯାଇଛି।

ଏବେ ଫେରିଯିବା ବହୁବେଶୀ ଅଜର ଅମର ହନୁମାନଙ୍କର "ହନୁମାନ ଚାଳିଶା"ରେ ବର୍ଣ୍ଣନା କରାଯାଇଥିବା ଅନ୍ୟ ରୂପ ଦେଖିବାକୁ। ସେ ଅଶୋକ ବାଟିକାରେ ସୀତା ବନ୍ଦିନୀ ଅବସ୍ଥାରେ ବହୁ ରାକ୍ଷସୀଙ୍କ ଦ୍ୱାରା ଜଗା ହୋଇଥିବା ବେଳେ ସୂକ୍ଷ୍ମ ରୂପରେ ଦେଖା କରିଥିଲେ। ଶିଂଶୁପା ବୃକ୍ଷର ପତ୍ର ଗହଳି ଭିତରୁ ଓ ରାମ ରାମ କହି ସୀତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ନିଜ ଆଡ଼କୁ। ଅମୃତ ସ୍ୱରୂପ ରାମ ନାମ ଶୋକାତୁରା ସୀତାଙ୍କୁ ସେତେବେଳେ ଆଶ୍ଚର୍ଯ୍ୟ ଚକିତ କରି ଦେଇଥିଲା।

ତା'ପରେ ପରେ ଭୀମ ରୂପ ଧରି ଅଶୋକ ବାଟିକାର ପ୍ରହରୀ ରାକ୍ଷସମାନଙ୍କୁ ସେମାନଙ୍କ ସେନାପତି ରାବଣ ପୁତ୍ର ଅକ୍ଷୟକୁମାର ସହ ସଂହାର କରି ଦେଇଥିଲେ।

"ଭୀମ ରୂପ ଧରି ଅସୁର ସଂହାରେ

ରାମଚନ୍ଦ୍ରକେ କାଜ ସଂୱାରେ।" (ଚୌପାଇ ୧୦ମ ପଦ)

ତା'ପରେ ବିକଟ ରୂପ ଧରି ଲାଙ୍ଗୁଡ଼ର ଶେଷ ଭାଗରେ ପ୍ରଜ୍ୱଳିତ ଅଗ୍ନିଶିଖା ଦ୍ୱାରା ସ୍ୱର୍ଣ୍ଣପୁରୀ ଲଙ୍କା ଜାଳି ଦେଇ ଛାରଖାର କରିଥିଲେ।

"ବିକଟ ରୂପ ଧରି ଲଙ୍କା ଜରାୱା"। (ଚୌପାଇର ନବମ) ଲଙ୍କା ଯିବା ନିମନ୍ତେ ମୈନାକ ଶିଖର ଦେଶରୁ ଲମ୍ଫ ଦେଇ ସମୁଦ୍ର ପାର ହେଲାବେଳକୁ ତାଙ୍କର ପାଟି ଭିତରୁ ହନୁମାନ ଧରିଥିଲେ ରାମଚନ୍ଦ୍ରଙ୍କ ପ୍ରଦତ୍ତ ମୁଦିଟି ସୀତାଙ୍କୁ ଦେଖାଇ ସୀତାଙ୍କ ବିଶ୍ୱାସ ପାଇବା ନିମନ୍ତେ।

"ପ୍ରଭୁ ମୁଦ୍ରିକା ମେଲି ମୁଖ ମାହୀଁ

ଜଲଧି ଲାଁଘିଗୟେ ଅଚରଜ ନାହିଁ।" (ଚୌପାଇର ଊନବିଂଶ ପଦ)

ସେ ଅଞ୍ଜନାଙ୍କ ପୁତ୍ର ଓ ପବନ ସୁତ (ଚୌପାଇ ଦ୍ୱିତୀୟ ପଦ ବା ଅନ୍ତ ବା ଦ୍ୱିତୀୟ ଦୋହା) ସେ କେଶରୀ ନାମକ ମର୍କଟ ରାଜାଙ୍କର ତନୟ ଓ ସ୍ୱୟଂ ଶଙ୍କର ଭଗବାନ। (ଚୌପାଇ ଷଷ୍ଠ ପଦ)।

ହନୁମାନ ଚାଳିଶାରେ ଆମେ ପଢୁ "ଶଙ୍କର ସୁଓ୍ୱନ କେଶରୀ ନନ୍ଦନ" - କିନ୍ତୁ ଏହା ପ୍ରକୃତରେ 'ସଂକର ସୁଓ୍ୱମ କେଶରୀ ନଂଦନ' ହେବ। ଏହା କାଶୀ ପଣ୍ଡିତ ସଭା ଗୋସ୍ୱାମୀ ତୁଳସୀ ଦାସଙ୍କ ମୂଳ ପାଣ୍ଡୁଲିପ ଉଦ୍ଧାର କରି କହିଛନ୍ତି ବୋଲି ପରମପୂଜ୍ୟ ଅବଧେଶାନନ୍ଦଜୀ ୨୦୦୮ ମସିହାରେ ଚୈତ୍ର ଶୁକ୍ଳ ନବମୀ ତିଥି "ରାମ ନବମୀ" ଦିନ ତାଙ୍କ ଭାଷଣରେ ପ୍ରକାଶ କରିଥିଲେ। ଶ୍ରୀ ହନୁମାନ ସ୍ୱୟଂ ଶିବଙ୍କର ସ୍ୱରୂପ, ଶିବ ସଦୃଶ ମଙ୍ଗଳମୟ, କରୁଣାଳୟ, ବ୍ରହ୍ମଜ୍ଞ ଓ ବିଷ୍ଣୁଭକ୍ତ। ସେ ଅଞ୍ଜନା ଓ ପବନଙ୍କର ପୁତ୍ର।

"ଦୁର୍ଗମ କାଜ ଜଗତ କେ ଯେତେ,
ସୁଗମ ଅନୁଗ୍ରହ ତୁହ୍ମାରେ ତେତେ।" (ଚୌପାଇ ୨୦)
"ସଂକଟ ତେଁ ହନୁମାନ ଛୁଡ଼ାୱେ,
ମନକ୍ରମ ବଚନ ଧ୍ୟାନ ଯୋ ଲାୱେ।" (ଚୌପାଇ ୨୬)

ତେଣୁ ହନୁମାନଙ୍କୁ ଅନ୍ତ ଦୋହାରେ "ପଓ୍ୱନ ତନୟ, ସଙ୍କଟ ହରନ, ମଙ୍ଗଳ ମୂରତି ରୂପ" ବୋଲି କୁହାଯାଇଛି।

କେବଳ ସେତିକି ନୁହେଁ, ଗୋସ୍ୱାମୀ ତୁଳସୀ ଦାସ "ସଙ୍କଟ ମୋଚନ ହନୁମାନ ଅଷ୍ଟକ" ନାମରେ ଅବଧି ଭାଷାରେ ଗୋଟିଏ ପ୍ରସିଦ୍ଧ ଅଷ୍ଟକ ମତ୍ତଗୟାଳ ଛନ୍ଦରେ ରଚନା କରି ଭକ୍ତମାନଙ୍କୁ ପ୍ରେରଣା ଓ ଆପଦବିପଦ ବେଳେ ଏକ ଆଶ୍ରୟ ସ୍ଥାପନ କରି ଯାଇଛନ୍ତି। ଏହି ଅଷ୍ଟକର ଘୋଷା ହେଉଛି -

"କୋ ନହିଁ ଜାନତ ହୈ ଜଗ ମେ କପି
ସଂକଟ ମୋଚନ ନାମ ତିହାରୋ।"

କ୍ୟାନସର ପକ୍ଷାଘାତ ଭଳି ଗୁରୁତର ଓ ଦୁରୂହ ରୋଗଠାରୁ ଆରମ୍ଭ କରି ମେଲେରିଆ ବସନ୍ତ ଭଳି ପ୍ରାଣାତଙ୍କ ରୋଗ ମଧ୍ୟ ହନୁମାନ ଚାଳିଶା ଓ ସଙ୍କଟମୋଚନ ହନୁମାନ ଅଷ୍ଟକ ଅନୁଷ୍ଠାନ ପୂର୍ବକ  ମଙ୍ଗଳବାର ଓ ଶନିବାର ଦିନ ଉପବାସ କରି ଏକୋଇଶ ବା ଶହେ ଆଠ ଥର  ଉପବାସ କରି ମନ ବଚନ ଓ କର୍ମ ସହ ଏକାଗ୍ର ଚିତ୍ତରେ ପାଠକରି ଫଳପ୍ରାପ୍ତ ହେଉଛନ୍ତି। ହନୁମାନଙ୍କର ଯେ କୌଣସି ଗୋଟିଏ ରୂପ ଧ୍ୟାନ କରି ଅସଂଖ୍ୟ ସାଧାରଣ ଲୋକ ଯୁଗ ଯୁଗ ଧରି ଏବେ ମଧ୍ୟ ଏକବିଂଶ ଶତାବ୍ଦୀର ପ୍ରାରମ୍ଭ ଦଶକରେ ସିଦ୍ଧି ଲାଭ କରିଛନ୍ତି। ଆଶ୍ଚର୍ଯ୍ୟଜନକ ଭାବରେ ରୋଗର ପ୍ରକୋପ ହ୍ରାସ ପାଇ ଶେଷରେ

ରୋଗ ସମ୍ପୂର୍ଣ୍ଣ ଭାବରେ ଆରୋଗ୍ୟ ହୋଇଛି । ହଜିଯାଇଥିବା ଧନର ପୁନଃଉଦ୍ଧାର ସମ୍ଭବ ହୋଇଛି । ବହୁଦିନ ଧରି ନିରୁଦ୍ଦିଷ୍ଟ ହୋଇଯାଇଥିବା ପ୍ରିୟ ଆତ୍ମୀୟମାନେ ଘର ବାହୁଡ଼ା ହୋଇ ଯାଇଛନ୍ତି । ଛାତ୍ରଛାତ୍ରୀମାନେ ପରୀକ୍ଷାରେ ସଫଳତା ପାଇଛନ୍ତି । ବିଚାରାଳୟରେ ଦୋଷୀ ସାବ୍ୟସ୍ତ ହୋଇ ଜେଲ ଭୋଗୁଥିବା ଲୋକେ ଉପର ବିଚାରାଳୟରୁ ମାଫ୍ ପାଇଛନ୍ତି । ଏତ ଗଲା ବ୍ୟକ୍ତି ବିଶେଷଙ୍କର କଥା । ପରିବାର ଓ ସମାଜ ଉପରୁ ସଙ୍କଟ କଟାଇବାକୁ, ବନ୍ୟା, ଗୃହଦାହ, ଝଡ଼ ତୋଫାନ ନୌକା ବୁଡ଼ି ପରି ବିପଦ ଓ ସଙ୍କଟ ବେଳେ ମଧ୍ୟ ହନୁମାନ ଭକ୍ତ ବତ୍ସଳ କପୀନ୍ଦ୍ର ନିଜ ଭକ୍ତମାନଙ୍କ ନିମନ୍ତେ ଶ୍ରୀରାମଙ୍କ ନିକଟରେ ଅଳି ଗୁହାରୀ କରି ଭକ୍ତମାନଙ୍କ ସଙ୍କଟ ଟାଳି ଦେଇଥିବା ବିଷୟ ଅନୁଭୂତି ଓ ବିଶ୍ୱାସର ସଫଳ ନିଦର୍ଶନ ଭାବେ ବିଦ୍ୟମାନ ।

ପୂର୍ବତନ ଚିଫ୍ ଇଂଜିନିୟର
ରାଜ୍ୟ ବିଦ୍ୟୁତ୍ ବୋର୍ଡ଼, ଓଡ଼ିଶା

ପାଠ୍ୟ ବିଧି : - ମଙ୍ଗଳବାର ଓ ଶନିବାରଦିନ ଉପବାସ କରି ମନ ବଚନ ଓ କର୍ମସହ ଏକାମୟ ଚିତ୍ତରେ ହନୁମାନଙ୍କର ଯେ କୌଣସିରୂପଧ୍ୟାନ କରିବାକୁ ହୁଏ ।।

ଏହା ପାଠ କରି ଆଶ୍ଚର୍ଯ୍ୟ ଜନକଭାବରେ ରୋଗର ପ୍ରକୋପ ହ୍ରାସ ପାଇ ଶେଷରେ ରୋଗୀ ସମ୍ପୂର୍ଣ୍ଣ ରୂପେ ଆରୋଗ୍ୟ ହୁଅନ୍ତି ।

ବି.ଦ.: ଏହି ସନ୍ଦର୍ଭଟିର ଲେଖକ ଶ୍ରୀଯୁକ୍ତ ରାମଚନ୍ଦ୍ର ମିଶ୍ର ମୋର ସୁହୃଦ ଓ ବାଲ୍ୟବନ୍ଧୁ । ସେ ଏହି "ହନୁମାନ ଚାଳିଶା" ଲେଖିଲା ବେଳେ ଗୋଟିଏ ହନୁମାଙ୍କଡ଼ ଅନେକ ଥର ଆସି ତାଙ୍କ ଟେବୁଲ ପାଖ ଝରକାରେ ବସି ତାଙ୍କ କଲମଟିକୁ ଧରି ଟିକେ କାମୁଡ଼ି ପୁଣି ଟେବୁଲ ଉପରେ ଥୋଇ ଦେଉଥିବା କଥା ସେ ମତେ କହୁଥିଲେ । ଏହା "ହନୁମାନ-ମହିମା" ନୁହେଁ ତ ଆଉ କଣ ?

ସତ୍ୟାନନ୍ଦ ଚମ୍ପତିରାୟ



# ଶ୍ରୀ ହନୁମାନ ଉପାସନା
# ପଞ୍ଚଯଜ୍ଞର ପ୍ରତୀକ

*ଡକ୍ଟର ସଚ୍ଚିଦାନନ୍ଦ ପାତ୍ରୀ*

ପ୍ରାଚୀନ ଭାରତର ଋଷି ବୈଜ୍ଞାନିକ ମନୁ ତାଙ୍କ ସ୍ମୃତିଶାସ୍ତ୍ରରେ ଗୃହସ୍ଥଙ୍କୁ ପ୍ରତିଦିନ ପାଞ୍ଚଗୋଟି ଯଜ୍ଞ ଅନୁଷ୍ଠାନ କରିବା ପାଇଁ ଉପଦେଶ ଦେଇଛନ୍ତି (ମନୁସ୍ମୃତି ୩/୭୦,୭୩,୭୪, ୮୦)। ଏଗୁଡ଼ିକ ହେଲା - ପିତୃଯଜ୍ଞ, ଋଷିଯଜ୍ଞ, ଦେବ ଯଜ୍ଞ, ଭୂତ ଯଜ୍ଞ ଏବଂ ନୃଯଜ୍ଞ। ଯଜ୍ଞର ଅର୍ଥ ହେଲା ସର୍ବସାଧାରଣଙ୍କ କଲ୍ୟାଣ ପାଇଁ ଉତ୍ସର୍ଗ। ଆମେ ପିତାମାତାଙ୍କ ମାଧ୍ୟମରେ ଏ ସଂସାରକୁ ଆସିଛୁ। ପୁରୁଷ ପୁରୁଷ ଧରି ଆମ ପିତୃଗଣଙ୍କର ଗୁଣସୂତ୍ର (DNA) ସଂରକ୍ଷିତ ଭାବରେ ଆମ ପାଖରେ ପହଞ୍ଚିଛି ଏବଂ ଆମର ଶାରୀରିକ, ମାନସିକ ଓ ଚାରିତ୍ରିକ ଗୁଣକୁ ପରିପ୍ରକାଶ କରୁଛି। ଆମର ଜନ୍ମ, ଅଭିବୃଦ୍ଧି ଓ ବିକାଶ ପାଇଁ ପିତାମାତା ହିଁ ଦାୟୀ। ପିତୃପୁରୁଷଙ୍କୁ ଉପଯୁକ୍ତ ସମ୍ମାନ ଜଣାଇବା ତଥା ଆଗାମୀ ବଂଶଧରମାନଙ୍କୁ ମାର୍ଗଦର୍ଶନ କରିବା ହେଉଛି ପିତୃଯଜ୍ଞ। ଜନ୍ମରୁ ଆମେ ସମସ୍ତେ ମୂର୍ଖ। ବିଦ୍ୟା ଅର୍ଜନ ପରେ ଜ୍ଞାନର ଆଲୋକରେ ଆମ ଜୀବନର ପୂର୍ଣ୍ଣତା ପ୍ରାପ୍ତ ହୁଏ। ଏହି ଜ୍ଞାନାଲୋକ ଯେଉଁ ଦୀପଶିଖାରୁ ଉଦ୍‌ଭାସିତ ହେଉଛି, ସେ ହେଉଛନ୍ତି ଗୁରୁ। ଗୁରୁଙ୍କୁ, ଗୁରୁକୁଳକୁ, ଶିକ୍ଷାର ପରମ୍ପରାକୁ ତଥା ଜ୍ଞାନର ଉତ୍ସକୁ ଆଦର କରିବା ତଥା ସ୍ୱାଧ୍ୟାୟ ଏବଂ ଶ୍ରଦ୍ଧାଳୁ ଜିଜ୍ଞାସୁ ଶିଷ୍ୟକୁ ପ୍ରଦାନ କରିବା ହେଉଛି ଋଷିଯଜ୍ଞ ବା ଜ୍ଞାନଯଜ୍ଞ। ଆମ ପ୍ରକୃତିରେ ଐଶ୍ୱରିକ ଶକ୍ତି ବିଭିନ୍ନ ପରିବେଶର କାରକ (Ecological Factors) ଭାବରେ ପରିବ୍ୟାପ୍ତ। ମୁଖ୍ୟତଃ ଏହା ପଞ୍ଚମହାଭୂତ ଯଥା : ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ (ମାଟି)। ବିଭିନ୍ନ ଐଶ୍ୱରିକ ଶକ୍ତିକୁ ହିନ୍ଦୁମାନେ ଦେବତା ଭାବରେ ସମ୍ମାନ ଜଣାନ୍ତି ଏବଂ ପୂଜା କରନ୍ତି। ପୂଜାର ଉଦ୍ଦେଶ୍ୟ ହେଲା, ପରିବ୍ୟାପ୍ତ ଶକ୍ତିକୁ ସଂରକ୍ଷଣ କରି ଆକର୍ଷଣ କରିବା, ଯାହାର ନାମ ଦେବଯଜ୍ଞ। ସଂସାରରେ ମନୁଷ୍ୟ ଏକାକୀ ନୁହେଁ; ବରଂ ଜୀବଜଗତର ଏକ ଅଂଶବିଶେଷ। ମନୁଷ୍ୟ ସମସ୍ତ ପ୍ରାଣୀଙ୍କ ତୁଳନାରେ ଅଧିକ ବିଜ୍ଞ। ଜୀବଜଗତର ସଂରକ୍ଷଣ କରିବା ତାହାର କର୍ତ୍ତବ୍ୟ। ଏହି ସଂରକ୍ଷଣ ଏକ ଯଜ୍ଞ ଭଳି

କାର୍ଯ୍ୟକ୍ରମ, ଯାହା ଭୂତଯଜ୍ଞ ଭାବରେ ଅଭିହିତ। ସାମାଜିକ ପ୍ରାଣୀ ଭାବରେ ମନୁଷ୍ୟମାନଙ୍କ ମଧ୍ୟରେ ପରସ୍ପର ସୁସଂପର୍କ ସ୍ଥାପନ ହେବା ଅତ୍ୟନ୍ତ ଆବଶ୍ୟକ। ବେଦର ଏକ ଉକ୍ତି କହେ : ସଂ ଗଚ୍ଛଧ୍ୱଂ ସଂ ବଦଧ୍ୱଂ ସଂ ବୋ ମନାଂସି ଜାନତାମ୍ (ଋ.ବେ. ୧୦.୧୯୧.୨) - ହେ ମନୁଷ୍ୟ! ତୁମେ ସମସ୍ତେ ମିଳିମିଶି ଚାଲ, ମିଳିମିଶି ବାର୍ତ୍ତାଳାପ କର, ପରସ୍ପର ସହଯୋଗପୂର୍ବକ ଜ୍ଞାନ ଲାଭ କର। ପ୍ରତ୍ୟେକ ମନୁଷ୍ୟ ଅନ୍ୟ ଜଣକ ତଥା ସମାଜ ସହ ସହାନୁଭୂତି ଓ ସହାବସ୍ଥାନ ସଂପର୍କ ରଖିବାର ଚେଷ୍ଟା ହିଁ ନୃଯଜ୍ଞ। ମୋଟାମୋଟି ଭାବରେ ପ୍ରତ୍ୟେକ ଗୃହସ୍ଥର ପାରିବାରିକ ସ୍ଥିତି, ଶିକ୍ଷାୟତନର ଅବସ୍ଥିତି, ଭୌତିକ ପରିବେଶ ଓ ଜୈବ ବିଭିନ୍ନତା (Biodiversity) ସଂରକ୍ଷଣ ପାଇଁ ଉଦ୍‌ଯୋଗ ଓ ସାମାଜିକ ଚଳଣିରେ ସୁସନ୍ତୁଳନ ହିଁ ପଞ୍ଚଯଜ୍ଞର ଅନ୍ତର୍ନିହିତ ତତ୍ତ୍ୱ। ଏହି ପଞ୍ଚଯଜ୍ଞ ତତ୍ତ୍ୱ ହେଉଛି - ପୃଥିବୀର ସର୍ବଶ୍ରେଷ୍ଠ ପରିବେଶ ସଂରକ୍ଷଣ ମନ୍ତ୍ର, ଯାହା ବୈଦିକ ଯୁଗରୁ ଆମ ଦେଶରେ ଆଦୃତ ହୋଇ ଚଳିଆସିଛି। ମନୁଙ୍କ ପଞ୍ଚଯଜ୍ଞର ଧାରା ଓ କାର୍ଯ୍ୟକ୍ରମ ପ୍ରତ୍ୟେକ ଦିନ ପ୍ରତ୍ୟେକ ଗୃହସ୍ଥ ହୃଦୟଙ୍ଗମ କରିବା ପାଇଁ ଆମର ବୈଦିକ ସନ୍ଧ୍ୟା, ତର୍ପଣ ଓ ବିଶ୍ୱବେଦ ପୂଜାରେ ପ୍ରତିଫଳିତ ହୋଇଛି। ଭଗବାନ ଶ୍ରୀକୃଷ୍ଣ ଗୀତାରେ ପଞ୍ଚଯଜ୍ଞର ପାରସ୍ପରିକ ତାତ୍ତ୍ୱିକ ସମ୍ପର୍କ ଉପରେ ଆଲୋଚନା କରିଛନ୍ତି (୩ୟ ଅଧ୍ୟାୟ : ଶ୍ଳୋକ ୪, ୫, ୮, ୧୨, ୧୪, ୧୫, ୨୦, ୨୧)। ସମୟାନୁକ୍ରମେ ତନ୍ତ୍ରଶାସ୍ତ୍ରର ପ୍ରଭାବରେ ପଞ୍ଚଯଜ୍ଞ କର୍ମ, ପଞ୍ଚଦେବତା ଭାବରେ ଉପସ୍ଥାପନା ଓ ଉପାସନାରେ ପରିବର୍ତ୍ତିତ ହୋଇଯାଇଛି। ଧୀରେ ଧୀରେ ପଞ୍ଚ ଯଜ୍ଞର ଦର୍ଶନ ଆମର ସାମାଜିକ ଜୀବନ, ପର୍ବପର୍ବାଣି, ସାମୂହିକ ଉତ୍ସବ ଓ ପୂଜା ମଧ୍ୟରେ ପ୍ରତିଫଳିତ ହେବାକୁ ଲାଗିଛି। ଏହି ଭାବରେ ବୈଦିକ ଯୁଗର ଏକ ପର୍ଯ୍ୟାବରଣ ସଚେତନତା କାର୍ଯ୍ୟକ୍ରମ ଭାରତୀୟ ସମାଜ ସହ ଗଣ୍ଠିଳିକା ଭାବରେ ଚଳି ଆସିଛି। ଉପଯୁକ୍ତ ଗବେଷଣା ଅନ୍ୟତ୍ର ଆନ୍ତର୍ଜାତିକ ସ୍ତରରେ ଉପସ୍ଥାପନା କ୍ରମରେ ଅଛି ତଥା ଭବିଷ୍ୟତରେ ଓଡ଼ିଆ ଭାଷାରେ ପ୍ରକାଶିତ ହେବାର ଯୋଜନାରେ ମଧ୍ୟ ଅନ୍ତର୍ଗତ। ଏହି ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ ହେଲା, ହନୁମାନଙ୍କ ଉପାସନା ମଧ୍ୟରେ ପଞ୍ଚଯଜ୍ଞର ଧାରାକୁ ଉପଲବ୍ଧି କରି ବିଶ୍ଳେଷଣ କରିବା।

## ହନୁମାନ ଉପାସନାରେ ପଞ୍ଚଯଜ୍ଞର ଧାରା

ବେଦରେ ସମସ୍ତ ପ୍ରାଣୀଜଗତକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି। ଯଥା : ମୁଖଦାନ ଓ ହସ୍ତଦାନ। ଯେଉଁମାନେ ମୁଖରେ ଧାରଣ କରନ୍ତି, ସେମାନେ ସମସ୍ତେ

ମୁଖଦାନ; ପିମ୍ପୁଡ଼ିଠାରୁ ତିମିଙ୍ଗଳ ଯାଏଁ ପରିବ୍ୟାପ୍ତ। ହସ୍ତଦାନମାନଙ୍କ ମଧ୍ୟରେ କେବଳ ତିନିଗୋଟି ପ୍ରାଣୀ ଅନ୍ତର୍ଗତ - ମନୁଷ୍ୟ, ମର୍କଟ ଓ ହସ୍ତୀ। ହସ୍ତର ଅର୍ଥ ହେଲା ଆୟତ୍ତକୁ ଆଣିବା ଶକ୍ତି (Power of capturing)। ହାତୀର ଶୁଣ୍ଢ ଏହି କାର୍ଯ୍ୟ ଦକ୍ଷତାର ସହ କରିପାରେ। ସମୟାନୁକ୍ରମେ ହାତୀର ମୁଣ୍ଡକୁ ସର୍ବସାଧାରଣଙ୍କର ପ୍ରତୀକ ଦେବତା (ଗଣ ଦେବତା) ଗଣେଶଙ୍କ ଶରୀର ସହ ତନ୍ତ୍ରବିଜ୍ଞାନ ଦୃଷ୍ଟିକୋଣରୁ ଯୋଡ଼ା ଯାଇଛି। ପ୍ରାଣୀଜଗତରେ, ମନୁଷ୍ୟ ବ୍ୟତୀତ ମର୍କଟମାନେ ହିଁ ହସ୍ତର ଉପଯୋଗ କରିଥାଆନ୍ତି। ଏ ଦୃଷ୍ଟିରୁ ବାନର, ହସ୍ତୀ ଓ ମନୁଷ୍ୟ ହସ୍ତଦାନମାନଙ୍କର ବୈଦିକ ଯୁଗରୁ ଏକ ସମନ୍ୱୟ ଉପସ୍ଥାପନା। ତ୍ରେତୟା ଯୁଗରେ ହନୁମାନ ରାମାୟଣର ଶକ୍ତିମାନ ପୁରୁଷ। ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଦୂତ ଭାବରେ ଅସମ୍ଭବ କର୍ମର ସମ୍ଭବକାରୀ। ଦ୍ୱାପର ଯୁଗରେ କପିଧ୍ୱଜ ରଥର ରକ୍ଷକ ଭାବରେ ଉଭା। ହୁଏତ କଳିଯୁଗ ପ୍ରାରମ୍ଭରେ ହନୁମାନ ଏକ ବୀରପୁରୁଷ ଭାବରେ ଉପାସିତ ହୋଇଛନ୍ତି ଏବଂ ତନ୍ତ୍ରର ପ୍ରଭାବରେ ଏକ ଦେବତା ଭାବରେ ବର୍ତ୍ତମାନ ପ୍ରତିଷ୍ଠିତ (ଶ୍ରୀବିଦ୍ୟାର୍ଣ୍ଣବ ତନ୍ତ୍ର, ହନୁମନ୍ତ ପ୍ରକରଣ)। ତୁଳସୀ ଦାସଜୀ ଶ୍ରୀହନୁମାନ ଚାଳିସାରେ ଲେଖିଛନ୍ତି, "ଚାରୋଂ ଜୁଗ ପରତାପ ତୁମ୍ହାରା।" (ଚୌପାଇ ୨୯)।

ନୃତତ୍ତ୍ୱ ବିଜ୍ଞାନ ଦୃଷ୍ଟିରୁ ଆଜକୁ ପ୍ରାୟ ପନ୍ଦର ନିୟୁତ ବର୍ଷ ପୂର୍ବେ ମନୁଷ୍ୟ ଏବଂ ଲାଙ୍ଗୁଳବିହୀନ ମାଙ୍କଡ଼ (Ape) ମାନଙ୍କର ବିବର୍ତ୍ତନ ସମାନ୍ତରାଳ ଭାବରେ ହୋଇଛି। ମନୁଷ୍ୟ ଅବସ୍ଥା ଓ ମାଙ୍କଡ଼ ମଧ୍ୟରେ ସଂଯୋଗ ସ୍ଥାପନ ପାଇଁ ଅନେକ ଆଦିମାନବର ଜୀବାଶ୍ମ (Fossil) ପ୍ରାମାଣିକ ତଥ୍ୟ ଭାବେ ଉପଲବ୍ଧ। ଏମାନଙ୍କ ମଧ୍ୟରେ ଜାଭା ମନୁଷ୍ୟ, ପେକ୍ସି ମନୁଷ୍ୟ ଓ ନିୟଣ୍ଡରଥାଲ୍ ମନୁଷ୍ୟ ହେଉଛନ୍ତି ପ୍ରାକ୍‌ମନୁଷ୍ୟ ଏବଂ କ୍ରୋ-ମେଗ୍ନନ୍ ମନୁଷ୍ୟ ଓ ଅଷ୍ଟ୍ରେଲିଆନ୍ ବୁସ୍‌ମେନ ହେଉଛନ୍ତି ପୂର୍ଣ୍ଣବିକଶିତ ଆଧୁନିକ ମଣିଷର ଆଦିମ ଅବସ୍ଥା। ଏହି ଆଦିମ ମନୁଷ୍ୟମାନେ ବର୍ତ୍ତମାନ ବାସ କରୁଥିବା ଗରିଲା, ସିମ୍ପାଞ୍ଜି, ଓରାଙ୍ଗ ଉଟାଙ୍ଗ ଓ ଗିବନମାନଙ୍କ ସହ ଶାରୀରିକ ଦୃଷ୍ଟିରୁ ଅନେକ ଭାବରେ ସାମଞ୍ଜସ୍ୟ। ଆଦିମାନବମାନଙ୍କର ଜୀବନଯାତ୍ରା ଓ ସାମାଜିକ ପ୍ରଣାଳୀର ପ୍ରମାଣ ଅନେକ ପାର୍ବତୀୟ ଗୁମ୍ଫାରେ ବର୍ତ୍ତମାନ ମଧ୍ୟ ଉପଲବ୍ଧ। କହିବା ବାହୁଲ୍ୟ, ମନୁଷ୍ୟର ରକ୍ତରେ ଥିବା "Rh Factor" ମାଙ୍କଡ଼ ଓ ମନୁଷ୍ୟମାନଙ୍କର ବିବର୍ତ୍ତନ ଇତିହାସର ଏକ ଜୀବନ୍ତ ପ୍ରମାଣ। ସାମାଜିକ ଦୃଷ୍ଟିକୋଣରୁ ଯଦି ଆମେ କୌଣସି ବୈଦିକ ଯୁଗର ଋଷିଙ୍କୁ ଆମ ଗୋତ୍ରର ପ୍ରବର୍ତ୍ତକ ଆଦିପୁରୁଷ ଭାବରେ ମର୍ଯ୍ୟାଦା ଦେଇପାରୁ, ତେବେ ଆଉ କିଛି ନିୟୁତ ବର୍ଷ

ପଛକୁ ଫେରିଯାଇ ବୈଜ୍ଞାନିକ ଦୃଷ୍ଟିକୋଣରୁ ମର୍କଟମାନଙ୍କୁ ଆମର ପୂର୍ବପୁରୁଷ ଭାବରେ ଗ୍ରହଣ କରିବାରେ ଦ୍ୱିଧା ବା କାହିଁକି ହେବ ? ଏ ଦୃଷ୍ଟିରୁ ହନୁମାନଙ୍କୁ ପୂଜା କରିବା ପିତୃଯଜ୍ଞର ଏକ ନିଦର୍ଶନ।

ହନୁମାନ ହେଉଛନ୍ତି ଭଗବାନ ଶିବଙ୍କର ଶକ୍ତି ଏବଂ କ୍ରିୟାତ୍ମକ ଅବତାର। ପୁରାଣ କହେ ଶିବଙ୍କ ଶକ୍ତିକୁ ପବନ ଦେବତା ଗ୍ରହଣ କରି ହନୁମାନଙ୍କର ମାତା ଅଞ୍ଜନାଙ୍କ ଗର୍ଭରେ ସ୍ଥାପନ କରିଥିଲେ। ଶିବ ହେଉଛନ୍ତି ଜଗଦ୍‌ଗୁରୁ। ଅନେକ ପୁରାଣ ଶାସ୍ତ୍ରରେ ଶିବ ପାର୍ବତୀଙ୍କ ପ୍ରଶ୍ନ ଉତ୍ତର ଛଳରେ ସମସ୍ତ ଗୁପ୍ତଜ୍ଞାନ ପ୍ରକାଶିତ ହୋଇଛି। ଶିବ ହେଉଛନ୍ତି ବ୍ୟାକରଣର ଅଧିଷ୍ଠାତା ଦେବତା। ଋଷି ପାଣିନି ଶିବଙ୍କ ଡମ୍ବୁରୁ ଧ୍ୱନିକୁ ଲକ୍ଷ୍ୟ କରି ବର୍ଣ୍ଣମାଳା ରଚନା କରିଥିଲେ। କଥିତ ଅଛି, ପାଣିନି ଶିବଙ୍କ ଜ୍ଞାନର ଏକ ବିନ୍ଦୁମାତ୍ର ଗ୍ରହଣ କରି ତାଙ୍କ ରଚିତ ଅଷ୍ଟାଧ୍ୟାୟୀ ଗ୍ରନ୍ଥରେ ପ୍ରତିଫଳିତ କରିଛନ୍ତି। ଭଗବାନ ଶିବ ଦେବତାଙ୍କର ଦେବତା-ମହାଦେବ ଭାବରେ ପରିଚିତ। ସମସ୍ତ ଦେବାଦେବୀ ସ୍ୱର୍ଗସୁଖରେ ବାସ କରୁଥିବା ବେଳେ ଶିବ ତାଙ୍କ ପରିବାର ସହ ମର୍ତ୍ତ୍ୟଲୋକର ହିମାଳୟରେ ବାସ କରୁଛନ୍ତି। ଅହରହ ସେ ଧ୍ୟାନମଗ୍ନ। ଯୋଗେଶ୍ୱର ଭାବରେ ମନୁଷ୍ୟ ସମାଜକୁ ଯୋଗର ଧାରା ଅବଲମ୍ବନ କରିବା ପାଇଁ ସବୁ ସମୟରେ ଚେତେଇ ଦେଉଛନ୍ତି। ଶିବଙ୍କ ଅବତାର ଭାବରେ ହନୁମାନ ହେଉଛନ୍ତି ସମସ୍ତଙ୍କର ଗୁରୁ ଏବଂ ଋଷି ଯଜ୍ଞର ପ୍ରତୀକ। ତୁଳସୀ ଦାସଜୀ କହିଛନ୍ତି "ଜୈ ଜୈ ଜୈ ହନୁମାନ ଗୋସାଇଁ। କୃପା କରହୁ ଗୁରୁ ଦେଓ୍ୱ କୀ ନାଇଁ।।" ଗୋସାଇଁ ଶବ୍ଦ କୌଣସି ଶ୍ରେଷ୍ଠ ଗୁରୁ ପଦବାଚ୍ୟ ବ୍ୟକ୍ତିତ୍ୱଙ୍କୁ କରାଯାଏ। ପରବର୍ତ୍ତୀ ବାକ୍ୟରେ କୁହାଯାଇଛି, "ହେ ହନୁମାନଜୀ ଆପଣ ମୋ ଉପରେ ସେହିପରି ଦୟା କରନ୍ତୁ, ଯେଉଁପରି ଗୁରୁଦେବ କରିଥାନ୍ତି। ହନୁମାନଙ୍କୁ ଗୁରୁ ଭାବରେ ଗ୍ରହଣ କରି ଗୋସ୍ୱାମୀଜୀ ପ୍ରଶଂସା କରି ପ୍ରାର୍ଥନା କରିଛନ୍ତି, "ଆପଣ ଜ୍ଞାନ ଗୁନ ସାଗର; ବିଦ୍ୟାବାନ ଗୁନୀ ଅତି ଚତୁର ଏବଂ ନିଜକୁ ବୁଦ୍ଧିହୀନ ଭାବରେ ଉପସ୍ଥାପନ କରି ବଳ, ବୁଦ୍ଧି ଓ ବିଦ୍ୟାର ଯାଚନା କରିଛନ୍ତି (ଦୋହା -୨)।

ହନୁମାନ ଦେବତା ଦୃଷ୍ଟିରୁ ସର୍ବତ୍ର ଆଦୃତ। ଗୀତାପ୍ରେସ୍, ଗୋରଖପୁର ଦ୍ୱାରା ପ୍ରକାଶିତ ହନୁମାନ ଅଙ୍କ (କଲ୍ୟାଣ ବାର୍ଷିକ, ୧୯୭୫)ରେ ଆମ ଦେଶରେ ଥିବା

୧୬୦ ଗୋଟି ପ୍ରସିଦ୍ଧ ହନୁମାନ ମନ୍ଦିରର ବର୍ଣ୍ଣନା ଅଛି। ପ୍ରତ୍ୟେକ ଗାଁ, ସହରର ଗଳି, ବିଭିନ୍ନ ତୀର୍ଥସ୍ଥଳ ତଥା ପ୍ରାୟ ସମସ୍ତ ମନ୍ଦିର ବେଢ଼ାରେ ହନୁମାନ ସ୍ୱତନ୍ତ୍ର ଭାବରେ ପୂଜା ପାଉଛନ୍ତି। ଆଗରୁ କହି ରଖିଛି, ସେ ଦେବ ଦେବ-ମହାଦେବଙ୍କର କ୍ରିୟାତ୍ମକ ଶକ୍ତି। ଭଗବାନ ବିଷ୍ଣୁଙ୍କର ପ୍ରିୟ ଭକ୍ତ। ସମସ୍ତ ଦେବଶକ୍ତିର ପୁଞ୍ଜିଭୂତ ଆକାର। ପବନ ଦେବତାଙ୍କର ପୁତ୍ର ଭାବରେ ମାରୁତି ନାମରେ ପରିଚିତ। ସମସ୍ତ ଜୀବଜଗତରେ ପ୍ରାଣଶକ୍ତି ପରିବ୍ୟାପ୍ତ ହୋଇ ରହିଛି, ଯାହାକି ଶ୍ୱାସ-ପ୍ରଶ୍ୱାସ (ମରୁତ) ଭାବରେ ଆମ ଶରୀରରେ ଗତି କରୁଛି। ଯୋଗବିଜ୍ଞାନ ଦୃଷ୍ଟିକୋଣରୁ ପ୍ରାଣାୟମ ଶକ୍ତି ହିଁ ହନୁମାନ ଶକ୍ତି; ଯାହା ପ୍ରାଣରୂପକ ଶ୍ରୀରାମଙ୍କୁ ଆଶ୍ରୟ କରି ସୀତା ରୂପକ କୁଳ କୁଣ୍ଡଳିନୀଙ୍କୁ ଉଦ୍ଧାର କରିପାରିବ। ତୁଳସୀ ଦାସଜୀ କହିଛନ୍ତି, "ରାମଦୁଆରେ ତୁମ ରଖୱାରେ।" ବହିର୍ମୁଖୀ ମନ ଯେଉଁ ସାଧନର ରାସ୍ତା ଦେଇ ଅନ୍ତର୍ମୁଖୀ ହୁଏ, ସେ ହେଉଛି 'ରାମ ଦୁଆର' ଯାହାର ରକ୍ଷକ ହେଉଛନ୍ତି ହନୁମାନ (ପ୍ରାଣାୟମ)। ଅତଏବ ହନୁମାନଙ୍କୁ ଉପାସନା ଯୋଗ ଦୃଷ୍ଟିରୁ ହେଉ ବା ତନ୍ତ୍ର ଦୃଷ୍ଟିରୁ ହେଉ, ସମସ୍ତ ଦେବତାମାନଙ୍କର ପ୍ରତୀକାତ୍ମକ ଉପାସନା ବା ଦେବଯଜ୍ଞ।

ହନୁମାନଙ୍କୁ ଶାରୀରିକ ଆକାର ଦୃଷ୍ଟିରୁ ଦେଖିଲେ ସେ ଏକ ମର୍କଟ। ବିବର୍ତ୍ତନର କ୍ରମରେ ମାଙ୍କଡ଼ମାନେ ମନୁଷ୍ୟ ବ୍ୟତୀତ ଅନ୍ୟ ସମସ୍ତ ପ୍ରାଣୀଜଗତର ଶୀର୍ଷରେ ଅଛନ୍ତି। ଆମ ଦେଶରେ ବିଭିନ୍ନ ବୃକ୍ଷ ଓ ପଶୁପକ୍ଷୀଙ୍କର ଉପାସନା ବହୁଳ ଭାବରେ ପ୍ରଚଳିତ। ଅନେକ ପ୍ରାଣୀ ଦେବତାମାନଙ୍କ ଶରୀରର ଅଂଶ ବିଶେଷ। ସମସ୍ତ ଦେବତାଙ୍କର ଗୋଟିଏ ଗୋଟିଏ ପ୍ରାଣୀ ବାହନ ରୂପରେ କଳ୍ପନା କରାଯାଇଛି। ଏ ଦୃଷ୍ଟିରୁ ଜୀବଜଗତର ଉପାସନା (ଭୂତଯଜ୍ଞ) ଜୈବ ବିଭିନ୍ନତାର ସୁରକ୍ଷା ପାଇଁ ଏକ ଆଧିଭୌତିକ ପ୍ରକ୍ରିୟା। ଆଧୁନିକ ବିଜ୍ଞାନୀମାନେ ବର୍ତ୍ତମାନ ବିଚାର କରିବା ଆରମ୍ଭ କଲେଣି ଯେ ମନୁଷ୍ୟ ସମାଜର ଧର୍ମଚେତନା ଓ ଆଚରଣ ହିଁ ଜୈବ ବିଭିନ୍ନତାକୁ ରକ୍ଷା କରିଛି ଏବଂ ଭବିଷ୍ୟତରେ ମଧ କରିବ। ଏ ଦୃଷ୍ଟିରୁ ଭାରତୀୟ ସଂସ୍କୃତି ବୈଦିକ ଯୁଗରୁ ଧର୍ମ ଆଚରଣ ମାଧମରେ ଜୀବଜଗତକୁ ସୁରକ୍ଷା ପ୍ରଦାନ କରିବାରେ ଅଗ୍ରଦୂତ। ପ୍ରାଣୀଜଗତରେ ଶ୍ରେଷ୍ଠ ଜୀବଭାବରେ ମର୍କଟମାନଙ୍କର ଉପାସନା ପ୍ରତୀକାତ୍ମକ ଭାବରେ ଜୀବଜଗତର ସଂରକ୍ଷଣ (ଭୂତଯଜ୍ଞ)କୁ ସୂଚିତ କରୁଛି।

ପ୍ରତ୍ୟେକ ମନୁଷ୍ୟର ଗାଲ ଉପରେ ଯେଉଁ ହାଡ଼ ଥାଏ ତାକୁ ଆମେ ହନୁ ହାଡ଼ କହୁ। "ହନୁମାନ" ଶବ୍ଦର ଅର୍ଥ ହେଲା ଯାହାର ହନୁ ହାଡ଼ ଅଛି, ଯେପରିକି ବୁଦ୍ଧି ଥିବା ବ୍ୟକ୍ତିକୁ 'ବୁଦ୍ଧିମାନ' କୁହାଯାଏ। ଅତଏବ ପ୍ରତ୍ୟେକ ମନୁଷ୍ୟ ଜଣେ ଜଣେ ହନୁମାନ। ଅନେକ ଗବେଷକ ହନୁମାନଙ୍କୁ ନିମ୍ନଲିଖିତ ପ୍ରାମାଣିକ ଭିତ୍ତିରେ ମନୁଷ୍ୟ ଭାବରେ ପ୍ରତିପାଦିତ କରିଛନ୍ତି।

୧. ରାମଙ୍କ ସୈନ୍ୟବାହିନୀରେ ଡାକ୍ତର, ଇଂଜିନିୟର ଓ ଶିକ୍ଷିତ ବ୍ୟକ୍ତିତ୍ୱ ଥିଲେ। ଏମାନଙ୍କୁ ମର୍କଟ ଭାବରେ ବିଚାର କରିବା ସମୀଚୀନ ମନେ ହୁଏ ନାହିଁ।

୨. ଶ୍ରୀରାମଙ୍କ ସୈନ୍ୟମାନେ ବାନର ଭଳି ଏକ ପ୍ରକାର ଯୁଦ୍ଧ ପୋଷାକ ପରିଧାନ କରୁଥିଲେ। ହୁଏତ ସେଥିରେ ଲାଞ୍ଜଭଳି ଏକ ଅଂଶ ଥିଲା।

୩. ଲାଙ୍ଗୁଳ ହନୁମାନଙ୍କ ଶରୀରର ବୋଧହୁଏ ଏକ ଅଂଶ ନଥିଲା। ଲଙ୍କା ଦହନ ପରେ ଲାଙ୍ଗୁଳରେ ନିଆଁ ଲାଗିବାର ବା ଦହନ ଜନିତ କ୍ଷତି ହେବାର କୌଣସି ପ୍ରମାଣ ନାହିଁ।

୪. ହନୁମାନ ଆଜନ୍ମରୁ ବ୍ରହ୍ମଚାରୀ। ପଶୁମାନଙ୍କର ଯୌନକ୍ରିୟା ଏକ ବ୍ୟାବହାରିକ ଚରିତ୍ର। ସେମାନେ କଦାପି ବ୍ରହ୍ମଚର୍ଯ୍ୟ ପାଳନ କରିପାରିବେ ନାହିଁ।

୫. ହନୁମାନ ସଂସ୍କୃତ ଭାଷାରେ ପ୍ରବୀଣ ଥିଲେ।

୬. ବର୍ତ୍ତମାନ ମନୁଷ୍ୟ ସମାଜରେ ସିଂହ, ବାଘ, ଭାଲୁ, ଷଣ୍ଢ, ହାତୀ, ନାଗ ଇତ୍ୟାଦି ସଂଜ୍ଞା ବ୍ୟବହାର କରୁଥିବା ଜାତି ଉପଲବ୍ଧ। ଏପରିକି ବାନରା ଓ ମାଙ୍କିଡ଼ିଆ ନାମରେ ଜାତି ମଧ୍ୟ ଅଛନ୍ତି। ହୁଏତ ରାମାୟଣ ଯୁଗରେ ମର୍କଟ, ବାନର ଇତ୍ୟାଦି ସଞ୍ଜ୍ଞା ବ୍ୟବହାର କରୁଥିବା ବନବାସୀ ଜାତି ଥିଲା, ଯେଉଁମାନେ ଶ୍ରୀରାମଚନ୍ଦ୍ରଙ୍କୁ ଯୁଦ୍ଧରେ ସାହାଯ୍ୟ କରିଥିଲେ।

ବାନର ଶବ୍ଦର ବିଶ୍ଳେଷଣ ହେଲା : ବା+ନର ବା ବିକଳ୍ପ ମନୁଷ୍ୟ (Alternate man)। ବୈଜ୍ଞାନିକ ଦୃଷ୍ଟିକୋଣରୁ ଏମାନେ ଲାଙ୍ଗୁଡ଼ଯୁକ୍ତ ବା ବିହୀନ ହୋଇପାରନ୍ତି। ଉପଯୁକ୍ତ ତଥ୍ୟରୁ ପ୍ରତିପାଦିତ ହୁଏ, ହନୁମାନ ମନୁଷ୍ୟ ସମାଜର ଏକ ବିକଳ୍ପ ଉପସ୍ଥାପନା। ତାଙ୍କର ଭକ୍ତିଭାବ, ଦୟାଭାବ ଏବଂ ଦୂତଭାବ ପ୍ରଭୁ ଶ୍ରୀରାମଚନ୍ଦ୍ର ଓ ରାବଣ ମଧ୍ୟରେ

ସଦ୍-ଭାବନାର ସେତୁ ଯୋଡ଼ିବା ପାଇଁ ପ୍ରଥମେ ପଦକ୍ଷେପ ନେଇଥିଲା। ଏହା ହିଁ ମନୁଷ୍ୟ ଓ ମନୁଷ୍ୟ ମଧ୍ୟରେ ଅତ୍ୟାବଶ୍ୟକ ସମ୍ପର୍କ। ଏହି ସମ୍ପର୍କ ହିଁ ନୃଯଜ୍ଞ।

ଏ ପ୍ରବନ୍ଧ ଲେଖିବାର ମୋର ନିଜସ୍ୱ କୃତିତ୍ୱ କିଛି ନାହିଁ, ବରଂ ଅନ୍ତର୍ନିହିତ ସତ୍ୟକୁ ପ୍ରକାଶ କରିବାରେ ଆନନ୍ଦ ଅଛି। ବ୍ରହ୍ମପୁର ସହରର ରାମଲିଙ୍ଗେଶ୍ୱର ପୋଖରୀ କୂଳରେ ହନୁମାନଙ୍କର ମନ୍ଦିର ଅଛି। ଦିନେ ପ୍ରଭୁଙ୍କୁ ଦର୍ଶନ କରିବାକୁ ମୁଁ ଯାଇଥାଏ। ସେହି ସମୟରେ ପଞ୍ଚଯଜ୍ଞର ପର୍ଯ୍ୟାବରଣ ଧାରା ଉପରେ ମୋର ଗବେଷଣା ଚାଲିଥିଲା। ଦର୍ଶନ ସମୟରେ ହଠାତ୍ ପ୍ରଭୁଙ୍କ ମୂର୍ତ୍ତିରୁ ଏ ଚିନ୍ତାକମ୍ପନ ମୋ ମନରେ ପ୍ରବେଶ କଲା; ସତେ ଯେପରି ସେ କହୁଛନ୍ତି, "ମୁଁ ହିଁ ପଞ୍ଚଯଜ୍ଞର ପ୍ରତୀକ"। ଘରକୁ ଫେରି ମନରେ ଯେଉଁ ଭାବଧାରା ଉଦ୍ରେକ ହୋଇଥିଲା, ତାକୁ ଟିପି ରଖିଲି। ପ୍ରଭୁଙ୍କ ଦୟାରୁ ଆଜି ସର୍ବସାଧାରଣ ଆଗରେ ତାହା ଉପସ୍ଥାପିତ ହେଲା। ଉପାସନା ବିଶ୍ୱାସ ଉପରେ ଆଧାରିତ। ହିନ୍ଦୁମାନଙ୍କର ଉପାସନା ପଦ୍ଧତିରେ ବିଶ୍ୱାସ ସହ ବିଜ୍ଞାନ ମଧ୍ୟ ଜଡ଼ିତ। ହନୁମାନଙ୍କର ଉପାସନା କେବଳ ମୂର୍ତ୍ତିପୂଜା ବା ପ୍ରାର୍ଥନାରେ ସୀମିତ ନ ରହି ପଞ୍ଚଯଜ୍ଞର ବୈଜ୍ଞାନିକ ଧାରାକୁ ଉପଲବ୍ଧି କରିବାରେ ନିୟୋଜିତ ହେଉ।

ଅଧ୍ୟକ୍ଷ, ସରକାରୀ ବିଜ୍ଞାନ ମହାବିଦ୍ୟାଳୟ
ଛତ୍ରପୁର - ୭୬୧୦୨୦,
ଦୂ.ଭା - ୯୮୬୧୩୫୨୫୫୦



# କାଳନେମୀ ହନ୍ତା
# ଶ୍ରୀ ହନୁମାନ

*ଶ୍ରୀ ଈଶ୍ୱରଚନ୍ଦ୍ର ତ୍ରିପାଠୀ*

**ଗୋ**ସ୍ୱାମୀ ତୁଳସୀ ଦାସଙ୍କ ଅନ୍ୟସମସ୍ତ କୃତୀମାନଙ୍କ ପରି "ବିନୟ ପତ୍ରିକା" ପୃଥିବୀର ପରିପକ୍ୱ ସାହିତ୍ୟିକ ରଚନାବଳି ମଧ୍ୟରୁ ଅନ୍ୟତମ। ଏହା ତୁଳସୀ ଦାସଙ୍କ ପକ୍ଷରୁ ଶ୍ରୀରାମଙ୍କ ପାଖକୁ ପଠାଯାଇଥିବା ଏକ ବିନୀତ ଓ ବିନମ୍ର ନିବେଦନ ପତ୍ର। ଯେତେବେଳେ ପ୍ରଭୁ ଶ୍ରୀରାମଙ୍କ ବିଚାରାଳୟରେ ଏହି ନିବେଦନ ପତ୍ରର ବିଚାର ହେବ, ସେତେବେଳେ କେତେକ ଦେବତା ଓ ବିଚାରାଳୟ ଅନୁଗାମୀଙ୍କୁ ତୁଳସୀ ଦାସ ତାଙ୍କ ପାଇଁ ଯୁକ୍ତି ଉପସ୍ଥାପନ କରିବାକୁ ଅନୁରୋଧ କରିଛନ୍ତି। ସେମାନଙ୍କ ମଧ୍ୟରୁ ଶ୍ରୀ ହନୁମାନ ଅନ୍ୟତମ।

ଶ୍ରୀହନୁମାନ ପ୍ରଭୁ ଶ୍ରୀରାମଙ୍କ ଅନନ୍ୟ ଭକ୍ତ। ସେ ପ୍ରଭୁଙ୍କ ଭକ୍ତ ଓ ନିଜର ଭକ୍ତମାନଙ୍କୁ ରକ୍ଷା କରନ୍ତି ଓ ପୃଷପୋଷକତା ଦିଅନ୍ତି।

ହନୁମାନ ଭଗବାନ ଶିବଙ୍କ ରୁଦ୍ର ରୂପର ଏକ ଅବତାର। 'ବିନୟ ପତ୍ରିକା'ରେ ମହାଦେବ, (୨୬) କପାଳି (୨୭) ପୁରାରି (୨୮) ରୁଦ୍ରାଗ୍ରଣି, ମନ୍ମଥ-ମନ୍ଥନ ଓ ଶୂଳପାଣି (୨୯) ଶବ୍ଦ ସବୁ ବ୍ୟବହୃତ ହୋଇଅଛି। ଦୁଷ୍ଟଙ୍କୁ ବିନାଶ ଓ ସାଧୁଙ୍କୁ ପରିତ୍ରାଣ କରି ପୃଥିବୀର ଅଧିକ ଭାରାକୁ ଲାଘବ କରିବା ପାଇଁ ଭଗବାନ ରାମାବତାର ହୋଇଥିଲେ। ଶ୍ରୀରାମଙ୍କ କାର୍ଯ୍ୟରେ ସହାୟତା କରିବା ପାଇଁ ହନୁମାନଙ୍କର ଜନ୍ମ।

ହନୁମାନଙ୍କର "ପୁରାରି" ଓ "ଶୂଳପାଣି" ଶବ୍ଦ ଦୁଇଟିକୁ ଆଲୋଚନା କଲାବେଳେ ଆମର ମନରେ 'ତିନି' ଶବ୍ଦଟି ବିଜୁଳି ପରି ଝଲସି ଉଠେ। ତ୍ରିପୁର ଓ ତ୍ରିଶୂଳ, ତ୍ରିମୂର୍ତ୍ତି ରୂପରେ ଆଖି ଆଗରେ ନାଚି ଉଠେ।

| | | |
|---|---|---|
| ୧. 'ତ୍ରୟୀ' | - | ଋଗ୍, ଯଜୁ ଓ ସାମବେଦ |
| ୨. ତିନି ଅବସ୍ଥା | - | ଜାଗ୍ରତ ସ୍ୱପ୍ନ ଓ ସୁଷୁପ୍ତି |
| ୩. ତିନି ଲୋକ | - | ଆକାଶ, ପାତାଳ ଓ ମୃତ୍ୟୁଲୋକ |
| ୪. ତିନି ଦେବତା | - | ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର |
| ୫. ତିନି ସ୍ତର | - | ସୃଷ୍ଟି, ସ୍ଥିତି ଓ ପ୍ରଳୟ |
| ୬. ତିନି ଗୁଣ | - | ସତ୍ତ୍ୱ, ରଜ ଓ ତମ |
| ୭. ସାମାଜିକ ତିନି | - | ଜ୍ଞାନ, ଇଚ୍ଛା ଓ କର୍ମ |
| ୮. ଆୟୁର୍ବେଦ ତିନି | - | ବାତ, ପୀତ ଓ କଫ |
| ୯. ମାନସିକ ତିନି | - | ଜାଣିବା, ଅନୁଭବ କରିବା ଓ ଇଚ୍ଛା କରିବା। |
| ୧୦. ଧ୍ୱନି ତତ୍ତ୍ୱର ତିନି | - | ଅ.ଉ.ମ. |

'ପୁରାରି' ଓ 'ଶୂଳପାଣି' ଏକ ଏକ ଅବତାର। କିନ୍ତୁ ହନୁମାନ ଏ ସବୁଙ୍କଠାରୁ ଉପରେ। ଏମାନଙ୍କୁ ସେ କେବଳ ଆୟତ କରି ନଥିଲେ। ବରଂ ତାଙ୍କୁ ଗିଳି ପକାଇଥିଲେ।

ଦିଗନ୍ତର ସମାନ୍ତରାଳ ସୃଷ୍ଟିର ଦୁଇଟି ମୁଖ୍ୟ କାରଣ ହେଉଛି ଦିକ୍ ଆଉ କାଳ। ସ୍ଥାନ ଓ ଚତୁର୍ଦ୍ଦିଗରେ ବିସ୍ତୃତିକୁ ଦିକ୍ ବା 'ସ୍ପେସ୍' କହନ୍ତି। ଏହା ବ୍ରହ୍ମାଙ୍କର ଗତିଶୂନ୍ୟ ନିଶ୍ଚଳ ଶକ୍ତି। ଆଉ କାଳ ହେଉଛି ଗତିଶୀଳ ଶକ୍ତି। ସଂସାରରେ ଯାହା ସବୁ ଘଟେ, ସବୁ ଏଇ ଦୁଇ ଶକ୍ତିର ସୀମା ଭିତରେ ହିଁ ଘଟିଥାଏ। 'ବିନୟ ପତ୍ରିକା' ରେ ସନ୍ଥ କବି ତୁଳସୀ ଦାସ ଲେଖିଛନ୍ତି, ହନୁମାନ ଏଇ ଦୁଇ ଶକ୍ତିଠାରୁ ଅଧିକ ପରାକ୍ରମୀ ଥିଲେ ଓ ସେମାନଙ୍କ ଉପରେ ବିଜୟ ହାସଲ କରିଥିଲେ। କେହି ଯୁକ୍ତି କରିପାରନ୍ତି -

ହନୁମାନ କେବଳ ସୂର୍ଯ୍ୟଙ୍କୁ ଗିଳି ପକାଇ ନଥିଲେ, ସେ ସୂର୍ଯ୍ୟଙ୍କ ସହିତ ରାହୁକୁ ମଧ୍ୟ ଗିଳି ପକାଇଥିଲେ। ରାହୁ ହେଉଛି ଅନ୍ଧକାରର ପ୍ରତୀକ ଆଉ ସୂର୍ଯ୍ୟ ହେଉଛନ୍ତି ଆଲୋକର ମୂଳ କାରଣ। ଶକ୍ର ହେଉଛନ୍ତି ଅଧିକ ଶକ୍ତି ବିଶିଷ୍ଟ।

"ରାହୁ -ରବି-ଶକ୍ରପତି ଗର୍ଭ ଖର୍ବିକରଣ।" (୨୫)

ତେଣୁ ଏଠାରେ ତୁଳସୀ ଦାସ ହନୁମାନଙ୍କୁ ଆଲୋକ ଅନ୍ଧକାର ଓ ଶକ୍ତି ଉପରେ ବିଜୟ ହାସଲ କରିଥିବା କଥା ଉଲ୍ଲେଖ କରିଛନ୍ତି।

ବିନୟ ପତ୍ରିକାରେ ଆଉ ଏକ ସ୍ଥାନରେ ଅଛି - "କାଳନେମୀ ହନ୍ତା"। କାଳ ହେଉଛି ସମୟ ବା କାଳ। ନେମୀ ହେଉଛି ଚକ୍ର। ହନୁମାନ ତେଣୁ କାଳଚକ୍ରକୁ ନାଶ କରିପାରନ୍ତି। (୨୫)

ଏଠାରେ ଜଣାଯାଏ ପାଶ୍ଚାତ୍ୟ ଦେଶମାନଙ୍କରେ 'କାଳ'କୁ ସରଳ ରେଖାତ୍ମକ ଭାବେ ବିଚାର କଲାବେଳେ ଭାରତୀୟମାନେ 'କାଳ'କୁ ଚକ୍ରାତ୍ମକ ମନେ କରନ୍ତି।

ତୁଳସୀ ଦାସ ହନୁମାନଙ୍କୁ ଆଉ ଏକ ସ୍ଥାନରେ 'ମହାଦେବ', 'କପାଳି' ବୋଲି କହିଛନ୍ତି। 'କପାଳି' ମାନେ ଯେ ମୁଣ୍ଡର ଖପୁରୀ ମାଳା ପିନ୍ଧିଥାନ୍ତି। ଏଥିରୁ ଅନୁମିତ ହୁଏ, ସୃଷ୍ଟି ପ୍ରଳୟ କାଳରେ କେବଳ ହନୁମାନ ହିଁ ଶେଷ ଆଶ୍ରୟ ସ୍ଥଳ ବୋଲି ଜଣାପଡ଼ନ୍ତି।

ଅତି ଅଳ୍ପ ପରିସର ଭିତରେ ହନୁମାନଜୀଙ୍କର ଆତ୍ମବିଦ୍ୟା ସମ୍ବନ୍ଧୀୟ ଘଟଣାବଳିକୁ ସଂଗ୍ରହ କରିବା ସମ୍ଭବ ନୁହେଁ। ଏବେ ସାମାଜିକ ଦୃଷ୍ଟିକୋଣରୁ ହନୁମାନଙ୍କ ଗୁରୁତ୍ୱକୁ ସମାଜର ମଙ୍ଗଳ ପାଇଁ ଆଲୋଚନା କରାଯାଉଅଛି। ରାମକଥା ବା ରାମାୟଣରେ ଦୁଇଟି ଅତି ସାଧାରଣ ପ୍ରଭାବଶାଳୀ ଚରିତ୍ର ଦେଖାଯାଏ। ସେ ହେଉଛନ୍ତି ରାବଣ ଓ ହନୁମାନ। ଉଭୟେ ଦୁଇ ବିପରୀତଧର୍ମୀ ଦଳ ଅଟନ୍ତି। ରାବଣ ତାମସିକ ଶକ୍ତିର ପ୍ରତୀକ ଏବଂ ହନୁମାନ ସାତ୍ତ୍ୱିକ ଶକ୍ତିରେ ବିଭୂଷିତ। ରାବଣ, ବିନାଶ ଭୀତିପ୍ରଦ ଓ ଅତ୍ୟାଚାରର ଉତ୍ସ। ହନୁମାନ ଯୁଗ ଯୁଗ ପାଇଁ ଏକ ରକ୍ଷାକାରୀ ଶକ୍ତିର ଉପାସକ।

ରାବଣ-ହନୁମାନ ଲଢ଼େଇ ନିଶ୍ଚିତ ଭାବରେ ଏକ ପ୍ରତୀକାତ୍ମକ ଓ ଦର୍ଶନୀୟ ଘଟଣା। ଯୁଗ ଯୁଗ ପାଇଁ ଏ ଲଢ଼େଇ ଘଟି ଆସିଛି ଓ ଘଟି ଆସୁଥିବ। ଏଥିରେ କେବଳ ହନୁମାନ ବିଜୟୀ ହୋଇଛନ୍ତି ଓ ସବୁଦିନ ପାଇଁ ବିଜୟୀ ହୋଇ ଆସୁଥିବେ। ଏହି ଦୃଷ୍ଟିକୋଣରୁ ହନୁମାନ ସବୁ ସ୍ଥାନରେ ଓ ସବୁ କାଳରେ ପୂଜନୀୟ।

କେବଳ ହନୁମତ୍ ପୂଜନ ଫଳରେ ସମାଜରେ ଅଶେଷ ସ୍ନେହ, ଶାନ୍ତି ଓ ସୌହାର୍ଦ୍ଦ୍ୟ ବୃଦ୍ଧି ପାଇବ ଓ ଶେଷରେ ରାମରାଜ୍ୟ ପ୍ରତିଷ୍ଠିତ ହୋଇପାରିବ।

'ଜୟ ଜୟ ଜୟ, ହନୁମାନ ଗୋସାଇଁ।'



# ଗୋସ୍ୱାମୀ ତୁଳସୀ ଦାସ କୃତ
## *"ବିନୟ-ପତ୍ରିକା"ର*
## *ହନୁମତ୍ ଦ୍ୱାଦଶିକା*
### (ଏକ)

ଜୟ ହେ ଅଞ୍ଜନୀ-ଗର୍ଭ    ଅମ୍ବୁଧି ସମ୍ଭୂତ,
ବିଧୁ ଦେବକୂଳ-କଇଁ    ମହାମୋଦ ପ୍ରଦ
ପିତାଶ୍ରୀ କେଶରୀ ଚାରୁ    ଲୋଚନ ଚକୋର
ସୁଖଦ ତୁମେ ତ ଲୋକ    ଶୋକ ତାପହର ॥୧॥

ଜୟ ହେ ଜୟ ହେ ବାଳ-    କପି ବାଳ କାଳେ,
ଖର ରବିକର ଆଭା    ଖେଳଣା ବିଚାରେ,
ଗିଳି ପକାଇଲ ତୁମେ    ତେବେ ମହାବୀର,
ରବି ରାହୁ ଶକ୍ର ବଜ୍ର    ଗରବ ନାଶିଲ ।
ହେ ଶରଣାଗତ ଭବ    ଭୟ ନାଶକାରୀ,
ଆହେ ବିଶ୍ୱ ଭର୍ତ୍ତା ଜୟ    ହେଉ ହେ ତୁମରି ॥୨॥

ଜୟ ରଣଧୀର ରଘୁ -    ବୀର ହିତ ପାଇଁ,
ଦେବ ମଣି ରୁଦ୍ର ଅବ -    ତାର ହେ ଗୋସାଇଁ ।
ସଂସାର ରକ୍ଷକ ବିପ୍ର    ସୁର ସିଦ୍ଧ ମୁନି -
ଆଶୀର୍ବାଦ ମୂର୍ତ୍ତିମାନ    ରୂପ ତୁମ ପୁଣି,
ହେ ବୁଦ୍ଧି ବାରିଧି ଧାତା    ଗୁଣ ସୁବିମଳ,
ତୁମ ଜୟ ହେଉ, ଜୟ    ସେ ଜ୍ଞାନ ଆକର ॥୩॥

ହେ ସୁଗ୍ରୀବ ଋକ୍ଷଗଣ କୁଶଳୀ ରକ୍ଷକ,
ମହାବଳୀ ବଳିନାଶେ ତୁମେ ସହାୟକ ।
ବାରିଧି ଲଂଘନ କାଳେ ସିଂହିକା ମର୍ଦ୍ଦନେ
ସିଂହ ସମ; ଲଙ୍କାକାଶେ ଧୂମକେତୁ ତୁମେ । ॥୪॥

ଶୁଣାଇ ଶ୍ରୀରାମ କଥା ଜାନକୀ କଷଣ
ହରି; ଉଜାଡ଼ିଲ ତମେ ଅଶୋକ କାନନ ।
ଆପେ ବନ୍ଧା ହୋଇ ମେଘ - ନାଦ ବ୍ରହ୍ମଶରେ,
ଅଗ୍ନିହୁଳା-ପୁଚ୍ଛ ନେଇ ପବନ ବେଗରେ,
ହୋଲି ଜଳାଇଲ ପରା ପବନ ନନ୍ଦନ
ରାବଣ ଲଙ୍କାରେ ଜୟ କେଶରୀ ନନ୍ଦନ ॥୫॥

ଶ୍ରୀରମ ଲକ୍ଷ୍ମଣେ ଦେଲ ଅପାର ଆନନ୍ଦ
ଋକ୍ଷ କପି ସେନା ସାଥେ ବାନ୍ଧି ସେତୁବନ୍ଧ,
ଯେତେ ସୁର ଦେବତାଙ୍କ ହେ କଲ୍ୟାଣକାରୀ
କୁଳକେତୁ ରାମେ ଦେଲ ବିଜୟଶ୍ରୀ ଢାଳି ॥୬॥

ତୁମ ବପୁ ଦାନ୍ତ ନଖ ଅତି ବିକରାଳ,
ବଦନର ଶୋଭା ଦିଶେ ସତେ ମହାକାଳ ।
ଭୁଜ ଦଣ୍ଡ କି ପ୍ରଚଣ୍ଡ ଗିରି ବୃକ୍ଷଧାରୀ,
ଘଣାରେ ପେଶିଲ ରଣେ ରାକ୍ଷସଙ୍କୁ ମାରି ॥୭॥

ଜୟ ହନୁମାନ ଜୟ ତୁମରି ହେ ଜୟ,
କୁମ୍ଭକର୍ଣ୍ଣ ମେଘନାଦେ କରିଲ ବିଜୟ ।
ରାବଣ ବିନାଶେ ତୁମେ କପୀଶ କାରଣ,
କାଳନେମି ଛଳ କୂଟ କଲ ବିଦଳନ । ॥୮॥

ଅସମ୍ଭବେ ତୁମେ ସିନା କରିବ ସମ୍ଭବ,
ତୁମ ବଳେ ସମ୍ଭବ ତ ହୁଏ ଅସମ୍ଭବ ।
ଜଳ ସ୍ଥଳ ନଭେ ତୁମ ଅବାରିତ ଗତି
ଜୟ ଜୟ ହନୁମାନ କପିକୁଳ ପତି ॥୯॥

ବିଶ୍ୱ ଯଶ ଲଭବୀର ଜୟ ହନୁମାନ
ତୁମ ବୀର ବାନା ଉଡ଼ି ହେଉ କମ୍ପମାନ ।
ବିଶୁଦ୍ଧ ବାଣୀରେ ବେଦ ବିଦ୍ୱାନେ ନିରତେ,
ତୁମ ଯଶୋଗୀତି ଗାନ କରନ୍ତୁ ଜଗତେ ॥୧୦॥

## ହନୁମତ୍ ଦ୍ୱାଦଶିକା (୨୬)
## (ଦୁଇ)

ଜୟ ଜୟ ଜୟ ହନୁ- ମାନ ଗୋସାଇଁ,
କପିପତି ସିଂହ ସମ ବିକ୍ରମ ପାଇ,
ସୁର ଶ୍ରେଷ୍ଠ ମହାମୋଦ କଲ୍ୟାଣ ଧାମ,
କପାଳଧାରୀ ଯେ ଶିବା- ବତାର ନାମ ।
ମୋହ ମୋଦ କାମ କ୍ରୋଧ ଭରା ଜଗତେ,
ଘନ ନିଶି ନାଶେ ତମେ ସୂର୍ଯ୍ୟ କି ସତେ ।୧।

ଜୟ ଅଞ୍ଜନୀ ସୁନୁ କପି କେଶରୀ ଜାତ,
ଭବ ଶୋକ କୋକ କୋକ ନଦ ସନ୍ତପ,
ନାଶକାରୀ; କଲ୍ୟାଣର ସୂର୍ଯ୍ୟ ସମାନ
ଜୟ ମହାବୀର ଜୟ ହେ ହନୁମାନ ।୨।

ସୁବିଶାଳ ବିକରାଳ ମୂର୍ତ୍ତି ବିକଟ,
ଅଙ୍ଗ ବଜ୍ର ସମଭାରୀ ସେ ଭୁଜଦଣ୍ଡ !
ବଜ୍ରନଖ ଦନ୍ତାବଳି ପୁଚ୍ଛ ବିଶାଳ
ଶତ୍ରୁନାଶେ ସେହି ସବୁ ଯେ ଅସ୍ତ୍ରାଗାର ।୩।

ମାତା ସୀତା ଶୋକ ତାପ ହେ ନାଶକାରୀ,
ସାନୁଜ ଶ୍ରୀରାମ-ମୋଦ ପଦ୍ମ-ଫୁଲ୍ଲାରୀ,
ବାନର ସ୍ୱଭାବେ ଖେଳେ ଲାଙ୍ଗୁଳେ ଲଙ୍କା,
ଜାଳି ପକାଇ ବେଗେ କପି ନିଶଙ୍କା ।
ଅଶୋକ ବାନ ଉଜୁଡ଼ା ହେ ହନୁମାନ,
ତେଜ ପୁଞ୍ଜ ଦିବା ମଧ୍ୟ ସୂର୍ଯ୍ୟ ସମାନ ।୪।

ସାଗରେ ପଥର ସେତୁ ରଚି ଗୋସାଇଁ,
ଅସୁର କୁଳର ଦେଲ ଭାଙ୍ଗି ବଡ଼ାଇ ।
କୁମ୍ଭକର୍ଣ୍ଣ ମେଘନାଦ ରାବଣ ମନ୍ଦ,
ମର୍ମକୁ ବିଦାରି କର୍ମ ଫଳକୁ ଛନ୍ଦ ।୫।

ତ୍ରିଭୁବନ ବିଭୂଷଣ ଜୟ ତୁମର,
ବିଭୀଷଣେ ରାମଭକ୍ତି ଅର୍ପିଲ ବର ।
ଶ୍ରୀରାମଙ୍କ ପାଇଁ ରଣେ କଲ ବିହିତ,
ଲକ୍ଷ୍ମଣ ଶ୍ରୀ ମାତା ସୀତା ଦେବୀ ସହିତ ।
ସୂର୍ଯ୍ୟ-କୁଳ-ସୂର୍ଯ୍ୟ ରାମ କୀର୍ତ୍ତି ପତାକା
ହୋଇଲ ହେ ମହାବୀର ରଜନୀ ରାକା ।୬।

ତୁମେ ଯନ୍ତ୍ର-ମନ୍ତ୍ର-ଅଭି- ଚାର ଗ୍ରାସିଲ
କୂଟ କୃତ୍ୟାକୁରଦେବୀ ଗଣେ ନାଶିଲ ।
ଶାକିନୀ ଡାକିନୀ ଭୂତ ପ୍ରେତ ବେତାଳ
ପୂତନାଦି ଭୟଙ୍କରେ ହୋଇଲ କାଳ । ।୭।

ହେ ବେଦାନ୍ତବିଦ ବିଦ୍ୟା ବିଶଦ ବହୁ,
ହେ ବେଦବେଦାଙ୍ଗ ବିଦ୍ ବ୍ରହ୍ମଙ୍କ ଠହୁଁ,
ତୁମେ ତ ଜ୍ଞାନ ବିଜ୍ଞାନ ବୈରାଗ୍ୟ ଜାଣ
କରନ୍ତି ନାରଦ ଶୁକ ସେ ଗୁଣଗାନ ।୮।

କାଳ-କର୍ମ-ଗୁଣ-ମାୟା ମନ୍ଥନ କାରୀ,
ଜ୍ଞାନ ବ୍ରତ ସତ୍ୟରତ ହେ ଧର୍ମଚାରୀ ।
ସିଦ୍ଧ ଦେବ ଯୋଗୀରାଜ ସଦା ସେବିତ
ପ୍ରଣତ ତୁଳସୀ ଦାସ ଆତୁର ଚିତ୍ତ ।୯।



**ସୂଚନା :**

**ଯନ୍ତ୍ର ମନ୍ତ୍ର ଅଭିଚାର -**

ମୋହନ ଉଚ୍ଚାଟନ ଆଦି ପ୍ରୟୋଗ ତଥା ଯାଦୁ-ଗ୍ରାସକାରୀ, ଗୁପ୍ତ ମାରଣ ପ୍ରୟୋଗ ତଥା ପ୍ରାଣନାଶିନୀ କୃତ୍ୟାଆଦି ଖଳ ଦେବୀଙ୍କ ନାଶକାରୀ।

**ବିଦ୍ୟା ବିଶାରଦ**

ଚାରି ବେଦ, ଛଅ ବେଦାଙ୍ଗ

(ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ)

**କାଳ-କର୍ମ-ଗୁଣ-ମାୟା**

କାଳ = ଦିନ, ଘଡ଼ି, ଦଣ୍ଡ ଇତ୍ୟାଦି,

କର୍ମ = ସଞ୍ଚିତ, ପ୍ରାରବ୍ଧ ଓ କ୍ରିୟମାଣ,

ଗୁଣ = ସତ୍ତ୍ୱ, ରଜ ତମ ମାୟାର ତ୍ରିଗୁଣ;

## ହନୁମତ୍ ଦ୍ୱାଦଶିକା (୨୭)
## (ତିନି)

ଜୟ ହନୁମାନ ଜୟ ହେ କଲ୍ୟାଣକାରୀ,
ମଙ୍ଗଳ-ଭବନ ଭବ- ଭୟ ଦୁଃଖହାରୀ ।
କପି ଦେହେ ତୁମେ ଶିବ ରୂପ ହେ ପୁରାରି,
ମହିମା ପ୍ରକଟ କରି ଅଛ ତନୁଧାରୀ ।
ରାକ୍ଷସ ପତଙ୍ଗେ ଭସ୍ମ ହୋଇବା କାରଣେ
ପ୍ରଭୁ ରାମ କ୍ରୋଧାନଳ ଜଣା ତ୍ରିଭୁବନେ ।
ସେ ଅନଳ ଶିଖା ଜ୍ୱାଳା- ମାଳାର ସମାନ,
ଯୁଗେ ଯୁଗେ ତୁମେ ଶୋଭା ପାଅ ହନୁମାନ ।୧।

ପବନ ଅଞ୍ଜନୀ ଦେବୀ ଆନନ୍ଦ ନିଧାନ,
ନତ ଗ୍ରୀବ ଦୁଃଖୀ ସୁଗ୍ରୀ ବନ୍ଧୁ ହନୁମାନ ।
ରାକ୍ଷସ କରାଳ କ୍ରୋଧା- ନଳ ନାଶକାରୀ,
ସୁର ସିଦ୍ଧ ସଜ୍ଜନଙ୍କ ମୋଦ ଦାନକାରୀ ।୨।

ବୁଦ୍ଧାଗ୍ରଣୀ ଜ୍ଞାନୀ ଶ୍ରେଷ୍ଠ ମାରୁତି ତନୟ,
ବିଶ୍ୱଖ୍ୟାତ ଶୂରବୀର ସମ୍ରାଟ ହେ ଜୟ ।
ସାମବେଦ ଗାନକାରୀ କାମଜିତ ଗଣେ,
କେଶରୀ ନନ୍ଦନ ତୁମେ ଶ୍ରେଷ୍ଠ ତ୍ରିଭୁବନେ ।
ରାମ ହିତକାରୀ ରାମ ଭକ୍ତ ଅନୁଗାମୀ,
ଜୟ ହନୁମାନ ଜୟ ରାମ-ଜନ-ସ୍ୱାମୀ ।୩।

ସଂଗ୍ରାମ କୁଶଳ ରାମ ବାର୍ତ୍ତା ଧର ଦୂତ
ଜଣାଅ ସାକେତ ଶୁଭ ହେ ପବନ ସୁତ ।
ରାମ ବିରହାର୍କ ତପ୍ତ ଭରତାଦି ଜନେ,
ତୁମେ କଳ୍ପବୃକ୍ଷ, ଦେଇ ଶୀତଳ କିରଣେ ।୪।

ଜୟ ହନୁମାନ ଜୟ ହେ ଗଗନଚାରୀ,
ରାମ ଅଭିଷେକ ଦେଖି ହର୍ଷେ ନୃତ୍ୟକାରୀ ।
ସିଂହାସନେ ବସି ରାମ ଶୋଭନ୍ତି ଯେପରି,
ଦାସ-ହୃଦ-ସିଂହାସନେ ଶୋଭନ୍ତୁ ସେପରି ।୫।

## (ଚାରି)

ଜୟ ବାତ ଜାତ ପରାକ୍ରମୀ ତାତ
ଭୁଜ ବେନି ସୁବିଶାଳ,
ଅତି ବଳଶାଳୀ ଲମ୍ବ ପୁଚ୍ଛଧାରୀ
ଜୟ ଅଞ୍ଜନୀ-ଦୁଲାଳ ।
ତୁମ କଳେବର ସୁମେରୁ ଭୂଧର
ସୁବିଶାଳ ଶକ୍ତିଶାଳୀ,
ତୁମ ଲୋମାବଳି ଯେସନେ ବିଜୁଳି -
ରେଖା ଜ୍ୱାଳାମୟୀ ମାଳି ।୧।

ବାଳାର୍କ ବଦନ ପିଙ୍ଗଳ ନୟନ
ସୁକଠିନ ଜଟାଧାରୀ
ଭ୍ରୁକୁଟି ବିକଟ ବଜ୍ର ଦନ୍ତ ନଖ
ହେ କପୀଶ ବଳଶାଳୀ ।
ବୈରୀ ମଦ ମତ୍ତ କରୀବର ଯୂଥ
ମର୍ଦ୍ଦନେ କେଶରୀ ସମ,
ତୁମେ ମହାଦେବ କପାଳୀ ହେ ଦେବ
ହନୁମାନ ଅନୁପମ ।୨।

ଭୀମାର୍ଜୁନ ଖଗ-ପତିଙ୍କ ଗରବ
ଖର୍ବକାରୀ ହନୁମାନ ।
ପାର୍ଥ ଶ୍ରୀକେତନେ ବିଘ୍ନ ବିନାଶନେ
ରହି ରଖ ରଥୀମାନ ।
ଭୀଷ୍ମ ଦ୍ରୋଣ ସୁତ-ପୁତ୍ର ସୁରକ୍ଷିତ
ଦୁର୍ଯ୍ୟୋଧନ ସେନାଗଣେ,
କରିବାକୁ ନାଶ ଆହେ ଅବିନାଶ
କାରଣ ହୋଇଲ ରଣେ ।୩।

ହୃତ ରାଜ୍ୟ ଦାତା ଭବ ଭୟ ତ୍ରାତା
ଦାନବୀ ଗରବହାରୀ,
ଇତି ଅତି ଭୀତି ଗ୍ରହ ପ୍ରେତ ରୀତି
ଚୋର ବ୍ୟାଧି ମହାମାରୀ ।
ଅତି ଅଗ୍ନିଭୟ ବାଧା ଅତିଶୟ,
କ୍ଳେଶନାଶେ ବଳବାନ,
ଅଧିକ ସମର୍ଥ ତୁମେ ହନୁମନ୍ତ
କରେ ତବ ଜୟଗାନ ।୪।

ଯେତେ ବେଦଶାସ୍ତ୍ର ବ୍ୟାକରଣ ଭାଷ୍ୟ
ବିଶାରଦ ମହାବଳୀ
କାବ୍ୟ ପରିହାସ କୋଟି କଳାରସ
ସିନ୍ଧୁ କେ ପାରିବ କଳି ?
ସାମବେଦ ଗାତା ଭକ୍ତ ସୁଖଦାତା
ଶିବରୂପୀ ହନୁମାନ,
ରାମ ଅନୁଗାମୀ ରାମ ପ୍ରୀତି କାମୀ
କରେ ତବ ଜୟଗାନ ।୫।

ସୂର୍ଯ୍ୟ ତାପ-ଦଗ୍ଧେ ସେ ସମ୍ପାତି ଗୃଧ୍ରେ
ପକ୍ଷ ନେତ୍ର ଦେହ ଦେଲ
କଳି ପାପ ତାପ ହରିଣ ସନ୍ତାପ
ଦାସ ପିତା ମାତା ହେଲ ।୬।

## (ପାଞ୍ଚ)

### (୨୯)

ହେ ପୂର୍ଣ୍ଣ ଆନନ୍ଦ ଚନ୍ଦ୍ର କେଶରୀ ନନ୍ଦନ,
ସାକ୍ଷାତ ପିଙ୍ଗଳ ସିଂହ ତବ ଅପଘନ ।
ଭରଣପୋଷଣ କାରୀ ସାରା ଜଗତର,
ଜୟ ହନୁମାନ ଜୟ ପବନ କୁମର ।
ହେ ଅଞ୍ଜନୀ ରୂପୀ ଦିବ୍ୟଭୂମି ଉତପନ୍ନ,
ଚାରୁ ମନୋହର ମଣି - ଖଣି ସୁଶୋଭନ ।
ଭକତ ସନ୍ତାପ ଚିନ୍ତା ଶୋକ ନାଶକାରୀ
ନିରତେ ତୁମରି ସ୍ତୁତି କରେ ବଜ୍ରଧାରୀ ।୧।

ଆହେ ଚଉବର୍ଗଦାନୀ ଆବ୍ରହ୍ମ ଜଗତ
ଐଶ୍ୱର୍ଯ୍ୟ ବିରାଗୀ ମହା- ବୀର ହନୁମନ୍ତ ।
ମନ କର୍ମ ବାକ୍ୟେ ସତ୍ୟ- ରୂପ ଧର୍ମବ୍ରତୀ
ସୀତାରାମ ପଦେ ତବ ପରମ ପୀରତି ।୨।

ବିହଗେଶ ବଳ ବୁଦ୍ଧି ଗର୍ବ ଖର୍ବକାରୀ,
ମନ୍ମଥ ମନ୍ଥନ ଉର୍ଦ୍ଧ୍ୱ- ରେତା ବ୍ରହ୍ମଚାରୀ ।
ନାଟକ ନିପୁଣ କୋଟି କବି କୁଳ ଚନ୍ଦ୍ର
ଗାୟନେ ଗନ୍ଧର୍ବ ଜିଣା ଭକ୍ତ ରାମଚନ୍ଦ୍ର ।୩।

ହେ ବୀର ମୁକୁଟମଣି, ମହା ଅଭିମାନୀ,
ପତି ଆଗେ ପତ୍ନୀକେଶ ପକାଇଲ ଟାଣି ।
ସୀତା ଦୁଃଖେ କ୍ରୁଦ୍ଧ ହୋଇ ନିଶାଚରୀ ଗଣେ
ଦଣ୍ଡିଲ ପାତକୀ ଯେହ୍ନେ କୃତାନ୍ତ ଭବନେ ।୪।

ରାମ କଥା ଶୁଣି ତନୁ ତବ ପୁଲକିତ,
ପ୍ରେମଭରା ଅଶ୍ରୁପୂର୍ଣ୍ଣ ନୟନ ମୁଦ୍ରିତ ।
ବାଣୀ ଗଦ ଗଦ କଣ୍ଠ ତୁମ ଅବିରଳ,
ରାମ ପାଦ-ପଦ୍ମ-ରେଣୁ ରସିକ ଭ୍ରମର ।୫।

ହନୁମାନ ରୂପୀ ଶିବ ହେ ତ୍ରିଶୂଳଧାରୀ,
ଏ ଭବସାଗରୁ ଦାସଜନେ କର ପାରି ।
ତୁମରି ଶରଣାଗତ ହୀନ ଜନ ଏହି,
ପାର କର କର ପାରି ମୁଁ ତୁମର ସ୍ନେହୀ ।୬।

## (ଛଅ)
## (୩୦)

ମହାବୀର ହନୁମାନ ଆଶ୍ରିତ ଯେ ନର,
ସକଳ କାମନା ସିଦ୍ଧି ହୁଅଇ ତାଙ୍କର ।
ହୀରାର ପଦକ ସମ ଏ ଦୃଢ଼ ବଚନ
ଆଶ୍ରା କରିଥାନ୍ତି ଯେହୁ ଶ୍ରୀବାୟୁ-ନନ୍ଦନ ।୧।

ଯେଣୁ ଅସମ୍ଭବେ ସେହି କରନ୍ତି ସମ୍ଭବ,
ସମ୍ଭବକୁ ପୁଣି କରିଥାନ୍ତି ଅସମ୍ଭବ ।
ଏ ଭଳି ବିଭୂତି-ବାନା କାହାର ଉଡ଼ଇ,
ରୂପ ସୁମରଣେ ଯାର ସଙ୍କଟ ମେଣ୍ଟଇ ।୨।

କଲ୍ୟାଣର ଖଣି ହନୁମାନ କୃପା କରି
ଯାହାଙ୍କର ଶିରେ କରେ ବାସ କରି ପରି ।
ତାହାଙ୍କୁ ଗିରିଜା ହର ଶ୍ରୀରାମ ଲକ୍ଷ୍ମଣ
ଜାନକୀ କରନ୍ତି କୃପା ସିନା ଅନୁକ୍ଷଣ ।୩।

## (ସାତ)

### ୩୧

ଚାହିଁ କେ ପାରିବ ରୋଷ-ନୟନେ ତାହାରେ
ବାୟୁ ସୁତ ହନୁମନ୍ତ ଆଶ୍ରୟ ଯାହାରେ ।୧।

ଭକତ ପ୍ରସନ୍ନକାରୀ ଅରି ନାଶକାରୀ
ଦୁଷ୍ଟବଳ ନାଶିବାରେ କିଏ ବଳଶାଳୀ ?
କେବଳ ସମର୍ଥ ସିନା ବୀର ହନୁମାନ,
ଜଗତେ ଆଉ କେ' ଅଛି ତାଙ୍କରି ସମାନ ॥

ତାଙ୍କ ପୁରୁଷାର୍ଥ ସିନା ବେଦ ଓ ପୁରାଣେ,
ପ୍ରକଟ ହୋଇଛି ଯାହା ଜଗତେ କେ ଜାଣେ ?
ସବୁ ଶୂରବୀର ଗଣେ କିଏ ଶିରୋମଣି
ହନୁମାନ ସମ ଅଛି କେଉଁଠି କହନି ? ।୨।

ରାଜ୍ୟ ବିତାଡ଼ିତଙ୍କୁ ପୁଉଣି ସ୍ଥାପିତ,
ରାଜାଧିରାଜଙ୍କୁ କରି ଗାଦିରୁ ବଞ୍ଚିତ ।
ରାବଣ ବନ୍ଧନୁ ଦେବ- ଗଣେ ମୁକୁଳାଇ
ବାରାନିଧି ଲଂଘି ଲଙ୍କା ଗଡ଼କୁ ଜଳାଇ
ମହାବଳି ଭୟାନକ ରାକ୍ଷସ ଦଳନେ
ହନୁମାନ ସମ ଆଉ କିଏ ଅଛି ଜଣେ ? ।୩।

ଯାର ବାଳଖେଳ କଥା ପକାଇ ମନରେ
ଏବେ ମଧ ବାଳସୂର୍ଯ୍ୟ ସଶଙ୍କିତେ ମରେ।
ଯା'ଚିବୁକ ଚୋଟେ ବଜ୍ର କଠୋର କୁଳିଶ
ଚୁରମାର ହେଲା ଝାଡ଼ି ଗରବର ବିଷ ।୪।

ଯା କୃପା କଟାକ୍ଷ ଲୋଭୀ ଏବେ ଲୋକପାଳେ
ଏପରି ଯେ ରଣଶାଳୀ ଯେହୁ ସେବିପାରେ;
ସେ ସଦା ନିର୍ଭୟ ରହେ ସଂସାର ଭିତରେ
ଜୟ ହନୁମାନ ଜୟ କହି ଉଚ୍ଚସ୍ୱରେ ।୫।

ପୂର୍ଣ୍ଣକଳା ଚନ୍ଦ୍ରମାକୁ ଚକୋର ଯେସନେ,
ରହେ ଚାହିଁ ଅପଲକେ ସତୃଷ୍ଣ ନୟନେ,
ତେସନେ ଚକୋର ସମ ହନୁମାନ ନାମ
ଭକତଙ୍କ ପାଇଁ ପରା କଳ୍ପତରୁ ଧାମ ।
ରେ ଦାସାନୁଦାସ ! ତୋର ପୀଡ଼ା ନାଶ ଫଳ
ମନେ ରଖ, ସବୁ ମହାବୀର କରତଳ ।୬।

## (ଆଠ)

### ୩୨

ହେ ସମର୍ଥ ବାୟୁସୁତ ରଘୁନାଥ ପ୍ରିୟ
ମୋର ଯାହା ସବୁ ପ୍ରାପ୍ୟ ସବୁ ବେଗି କରି ଦିଅ।
ତୁମ ବଳେ ସିନା ବିଶ୍ୱ ସ୍ଥିର ବସ୍ତୁ ଚଳନେ ହୁଅଇ କ୍ଷମ,
ତୁମେ କଲେ ମନ ମୋ ସମ ନିକର୍ମା ହେବ ଭକତ ପରମ ।୧।

ତ୍ରିଭୁବନ ଉଜାଗର   କହ ତେବେ   ଭିନ୍ନ କିଆଁ ମୋହ ପାଇଁ,
ଭିତରେ ବାହାରେ   ଘନ ଅନ୍ଧକାରେ   କରି ପକାଇଛ ଛାଇ ?  ।୨।

ଆଗେ କେଉଁ ଭଲ   ଦେଖି ହେ ମୋହର   ଏକାନ୍ତ ନିଜର କଲ,
ଏବେ କେଉଁ ଦୋଷେ   ଅତିଶୟ ରୋଷେ   ହାତୁଁ ପକାଇଲ ତଳ ? ।୩।

ମୁହିଁ ସଦା ତୁମ   ନାମ ଟୁକୁରାକୁ   ବିକି ଖାଇ ଚଳିଯାଏ,
ତୁମ ନାମ ବଳେ   ଉଜଳି ଭୂତଳେ   ଜୀଇ ଥିଲି ଆଜିଯାଏ ।୪।

ମୁହିଁ ଯେବେ ତୁମ   ବିମୁଖ ହୋଇଛି   ମୋ 'ହୃଦ' ସିନା କାରଣ,
କରିଅଛି ଗାଳି ଗୁଲଜ   ତୁମକୁ ସତେ   ମୋ କୁଟୁମ୍ବ ଜନ   ।୫।

ଏବେ କେଉଁପରି   ଦେଖାଇବି ମୁହଁ   ମୋତେ ବୁଦ୍ଧି ନଦିଶଇ ।
ମୋତେ ବତାଇବ   ରାମ ପ୍ରିୟ ତମେ   ମହାବୀର ଦୟାବହି   ।୬।

ଅଞ୍ଜନୀ କୁମାର   ହେ କପୀଶ ମୋର   ମନ କଥା ସବୁ ଜାଣ,
ଜ୍ଞାନ ଗୁଣ ଧାମ   ତୁମେ ପୂର୍ଣ୍ଣକାମ   ମହାବୀର ହନୁମାନ। ।୭।

ବୁଝି ଅଛିକେତେ   ସ୍ୱାମୀ ଦ୍ରୋହ ଯେତେ   ନଷ୍ଟ ହେବାକୁ ହିଁ ପଡ଼େ,
ସେହି ଦୋଷେ ଦାସ   ହୋଇଛି ହତାଶ   ନୟନୁ ଲୋତକ ଝରେ। ।୮।

ତୁମ ସ୍ୱାମୀ ରାମ   ନେତ୍ର ଅଭିରାମ   ସ୍ୱାମିନୀ ଜାନକୀ ମାତ
କେତେ ମନୋହର   ଆହା ନିରନ୍ତର   ଏକ ସ୍ଥାନେ ଆତଯାତ । ।୯।

ତହିଁ ଏ ଦାସର ତୁମ   ଛଡ଼ା ପର-ଭରସା   କେ' ଅଛି ଆଉ,
ତେଣୁ ଦୟା ବହି ନିଅ   ତମେ ତହିଁ   ଏ ଜୀବନ ଥାଉ ଥାଉ। ।୧୦।

(ନଅ)

୩୩

ହେ ଭକତ ଜନ ପୀଡ଼ା ପ୍ରାସହାରୀ ଗୋସାଇଁ
ତୁମକୁ ଏପରି ରୀତି    କେବେ ଶୋଭା ନପାଇ।
ଶ୍ରୀରାମଙ୍କ ସମ ସ୍ୱାମୀ   କାହିଁ ତିନି ଭୁବନେ,
ତୁମ ସମ ସହାୟକ    କାହାକୁ ମୁଁ ନ ଗଣେ ।୧।

ଏପରି ହୋଇବି ତୁମ    ଦେଖୁ ଦେଖୁ କିପରି
ପୀଡ଼େ କଳି, ତବାଶ୍ରିତ ଜନ ଶିଶୁ କେଶରୀ ?
ଜଣାଯାଏ ଏହି ଯୁଗେ   ତବ ଭକ୍ତ ବାତ୍ସଲ୍ୟ,
ଶରଣାଗତ ରକ୍ଷକେ    ଯାହା ମାତ୍ର ସେ ଶଲ୍ୟ।
ଦୁଃଖହାରୀ ଉଦାରତା   ଯେତେ ତୁମ ସୁଗୁଣ
ଏହି କଳି ଯୁଗେ ସବୁ   ହୋଇଥାଏ ନିଶୂନ ? ।୨।

ବଳୀ ଦଶକନ୍ଧ ଦିନେ   ଶୁଣି ତୁମ ହୁଁକାର,
ଅଙ୍ଗ ବଳ ହୋଇଗଲା   ଶିଥିଳିତ ଅପାର।
ସେହି ତୁମ ବଳବୀର୍ଯ୍ୟ  ଗଲା କେଉଁ ଆଡ଼ିକି,
କୃପାଳୁ କି ହୋଇଗଲ   କପଟୀ ମୋ ପାଇଁକି ? ।୩।

ତୁମ ଲୋକ ଲୁଗା ଫାଟି ସରିଲାଣି ଇଜ୍ଜତ,
ତାର ଲଜ୍ଜା ଢାଙ୍କିବାକୁ   ହୋଇବ କି' ସମର୍ଥ ?
ଏବେ କପଡ଼ାକୁ ସିଇଁ   ରଖିବ ନା ମହତ,
ଆଗେ ଆର୍ତ୍ତ ଶୁଣୁଥିଲ   ଏବ କିଆଁ ଉଷତ ।୪।

ଏ ଦାସ ସଙ୍କଟ ଶୁଣି   ନିଅ ତୁମ ସୁଯଶ,
ଶ୍ରୀରାମ ଭକତଙ୍କର    ଯଶ ରାଶି ଅବଶ୍ୟ ।
ତ୍ରିକାଳେ କଲ୍ୟାଣ ଯଶ  ଲଭନ୍ତି ଏ ଭକତେ,
କାହିଁ ନ ହାରନ୍ତି     ରାମ ଭକ୍ତ ଏହି ଜଗତେ ।୫।

●

(ଦଶ)

୩୪

ହେ କପୀଶ ମହାବୀର ମୁହିଁ ଅତି ଆରତ
ଦୀନ ଦୁଃଖୀ ପ୍ରପୀଡ଼ିତ ଜଗିଥାଏ ସ୍ୱାରଥ ।
ଭୁଲ ବୁଝିବନି କେବେ ମୋ'କଥାକୁ ପ୍ରଭୁ,
ଭଲ ମନ୍ଦ ନ ବିଚାରି କହିଯାଏ ସବୁ ।
ବିଚଳିତ ମତି ଯେଣୁ ମନ ନୁହେଁ ସ୍ଥିର
ଧରିବନି କଥା ମୋର ଆହେ ମହାବୀର ।୧।

ଜଗତେ ବିଦିତ ଏହି ରୀତି କାଳେ କାଳେ
ହେଲେ ଅନାବୃଷ୍ଟି ଅବା ଯଦି ବେଶି ଢ଼ାଳେ,
ବ୍ୟାକୁଳିତ ନର ନାରୀ ଦେଇଥାନ୍ତି ଗାଳି
ଦଇବକୁ ଅହରହ କିଛି ନ ବିଚାରି ।
ଠାକୁରେ ଏ ଗାଳି ପ୍ରତି ନରଖି ଖିଆଲ,
ପାଳନ୍ତି ପୋଷନ୍ତି ଜନେ ପ୍ରେମେ ବାରବାର ।୨।

କଳିଯୁଗେ ଭବନାବେ ବସି ଭୟାତୁରେ,
ନାବ ନ ଚାଲିଲେ ଭଲେ ଆରୋହୀ ଆତୁରେ,
ଗାଳି ମନ୍ଦ କରେ ଯାହା ତାହାକୁ ନଧରି,
ବତ୍ସଳତା ଗୁଣେ କ୍ଷମା କର ହେ କେଶରୀ ।୩।

ସକଳେ ସଙ୍କଟେ ଆହେ ସଙ୍କଟ ମୋଚନ,
ସମର୍ଥ ହିତୈଷୀ ଜନେ କରନ୍ତି ସ୍ମରଣ ।
ଅପରାଧ ଭୁଲି ସେହୁ ଆସିଥାନ୍ତି ପାଶେ,
ସ୍ୱଜନେ ସଙ୍କଟୁ ରକ୍ଷା କରିବା ସକାଶେ ।୪।

ସେବକ ଭୁଲକୁ ସ୍ୱାମୀ ସୁଧାରିବା ପାଇଁ
ଆସି ଯାଇଥାନ୍ତି ପାଶେ ଶୂନ୍ୟରୁ ଓହ୍ଲାଇ ।
ସହଜେ ନିର୍ଭର କୃପା ପାଇଛି ଏ ଦାସ,
ଆଶା ହତ ହେବି କିଆଁ ଥାଉ ଏ ବିଶ୍ୱାସ ।୫।



## (ଏଗାର)

### ୩୫

ସଙ୍କଟ ଆସିଲେ ମାଡ଼ି      ଜୀବନେ କାହାରି
ଭଲ ମନ୍ଦ କହି କେତେ      ସ୍ୱାମୀଙ୍କୁ ସେବକ ଯେତେ
ଦେଇଥାଏ ଗାଳି,
ସୁସ୍ୱାମୀ ଯେ କୁସେବକ      ଗାଳି ନ ବିଚାରି ।
ନିଜ ଭଲ ଗୁଣେ      ସେବକ ଦୋଷ ନଗଣି
ନିଅନ୍ତି ସୁଧାରି ।      ।୧।

ସମର୍ଥ କଲ୍ୟାଣକାରୀ      ସାହାସୀ ଏସନେ
ଅପର ସଙ୍କଟେ ଯିଏ      ଅକାରଣେ ଦେଇ ଦିଏ
ସହାୟତା କ୍ଷଣେ
ଏହିପରି ଶୂରବୀର      ପାଶେ ଲାଗେ ଧାଡ଼ି
ମିଶିବାକୁ ନଦେ      ସିନ୍ଧୁ ପ୍ରାଣବନ୍ଧୁ
ବିନା ଡ଼ାକରାରେ  ଯେହ୍ନେ      ଯାଇଥାନ୍ତି ମାଡ଼ି ।      ।୨।

ଜଗତେ ପୁରୁଷ ନାରୀ      ନିଜ ଭଲ ଚାହିଁ
ନିଜ ଦେବୀ ଦେବତାଏ      ଭଜନାଦି କରିଥାଏ
ଇଛାଫଳ ପାଇଁ
ମୋହରି ତ ଏକମାତ୍ର      ତୁମେହିଁ ଭରସା,
ତେବେ ପ୍ରଭୁ କେଉଁ ଦୋଷେ      ମହାବୀର ତବ ରୋଷେ
ତୁମ ଲୋକ ଭୋଗ କରେ      ଏହି ଦୁରୁଦଶା      ।୩।

ତୁମବଳ ଭରସାରେ      ପାଳିଲ ଗୋସାଇଁ
ସେବକ ନକଲେ ସେବା      ଆଉ କି କରିବ ଅବା,
ତଥାପି ସେବକ ପଣେ      ପାଳିବ କି ନାହିଁ ?
କୁସେବକ ହୋଇପାରେ      କିଏ କେତେବେଳେ
ଜଗତେ ସୁସ୍ୱାମୀ      ବିରାଜନ୍ତି କାଳେ କାଳେ      ।୪।

ଅପରାଧ ମାୟା ମୋହ ସବୁ ତ ମୋହର
ଦୋଷୀକୁ କ୍ଷମିବା ବଡ଼ପଣ ପ୍ରଭୁଙ୍କର
ଜାଣନ୍ତି ଜଗତ ଜନେ ନୀଚେ ସୁଆସନେ
ଉଚ୍ଚେ ବସାଇଲେ ଗୁଣ ଭୁଲିବ କେସନେ ? ।୫।

ଗାଏ ତୁମ ଯଶ ବେଦ ତୁମେ ମୁକ୍ତିଦାତା
ତୁମ ଭଲେ ହେବ ଭଲ ତୁମ ଦାସର ମଙ୍ଗଳ
ଅନ୍ୟଥା ଜଗତେ
ହୋଇବ ନାହିଁ ସେ ଯୋଗ୍ୟ ଆଉ କେଉଁ ଅର୍ଥେ ।୬।

## (ବାର)

## ୩୬

ଆହେ ଦୟାମୟ ବାୟୁ ନନ୍ଦନ,
ଘେନ ଦୟାବହି ମୋର ବନ୍ଦନ, ।୧।

ସବୁ କଲ୍ୟାଣର ତୁମେ ମୂରତି
ସବୁ ଅଶୁଭକୁ ଦିଅ କରତି ।୨।

ସନ୍ଥ ହିତକାରୀ ତୁମେ ମାରୁତି
ସଦା ହୃଦେ ପରା ତୁମ ଶ୍ରୀପତି ।୩।

ପିତା ମାତା ଗୁରୁ ଗଣ ନାୟକ,
ଶିବ ଶମ୍ଭୁ ବାକ୍ ଶୁକ ନାରଦ ।୪।

ବନ୍ଦି ସଭି ପଦେ କରେ ବିନତି
ଦିଅ ରାମ ପଦେ ଚିର ଭକତି ।୫।

ଭାଷାନ୍ତର - ସତ୍ୟାନନ୍ଦ ଚମ୍ପତିରାୟ

## ସ୍ୱାମୀଙ୍କ ପାଖକୁ ସେବକର
## *ଦଇନି-ପତ୍ରିକା*

*(ଶ୍ରୀ ମହାବୀରଙ୍କ ଜରିଆରେ)*

ଜୟ ହନୁମାନ ଜୟ ଏ ତିନି ଭୁବନେ,
ଦୟାକରି ମୋ 'ଦଇନି-ପତ୍ରିକା' ଯତନେ
ରଖିଦେବ ପ୍ରଭୁ ରାମ କୃପାଳୁ ଚରଣେ।"
କରିବ ଏତିକି ମହାବୀର ମୋହପାଇଁ
ଜୟ ଜୟ ଜୟ ହନୁମାନ ହେ ଗୋସାଇଁ।।

# ଶ୍ରୀରାମ ଦ୍ୱାଦଶିକା

## ଦଇନି-ପତ୍ରିକାର

## (ଗୁହାରୀ ଏକ)

ମୁଁ ନୀଚ ପାମର ପାପ-କାଳିମା ଜଡ଼ିତ
ଅଶେଷ ଅଧମ ହୀନ-କର୍ମ-କବଳିତ ।
ତଥାପି "ତୁମର ମୁହଁ" - ସତ କି ନୁହଇ
ଏ ଅଳୀକ ବୋଲି ପ୍ରଭୁ ପାରିବ କି କହି ? (୧)

ସତ୍ୟମୟ ସ୍ୱାମୀ ମୁହିଁ ଗୁହାରି କରୁଛି
ତମ ପାଦ ତଳେ ଏଇ ଅଳି ଜଣାଉଛି
"ତୁମର ମୁଁ", "ତୁମେ ମୋର", ରଟୁ ମୋର ମନ
ଅହରହ ଜପୁଥାଉ ଏହି ଦୀନ ଜନ ।। (୨)

ତୁମର ଜଗତ ଏହି, ତୁମେ ସର୍ବମୟ,
ତୁମେ ନୁହଁ ଜ୍ଞାନ ବୁଦ୍ଧି ତର୍କର ବିଷୟ ।
ତୁମେ ନିତ୍ୟ ପ୍ରେମମୟ, ପ୍ରେମରେ ମିଳିବ,
ଏ ଧୂଳି ବାସନା ସେଇ ସ୍ରୋତେ ତରଳିବ ।। (୩)

ଯେତେ ଅହଂକାର ହୃଦେ ଦେଇଛ ମୋହରି,
"ତୁମର ମୁଁ" ବୋଲି ଗର୍ବ ହୃଦେ ଦିଅ ଭରି ।
ଏ 'କର' 'ଚରଣ' 'ନେତ୍ର' କର୍ଣ୍ଣାଦି ସକଳ
"ତୁମର ବୋଲି ଏ ଗର୍ବ," କରନ୍ତୁ ନିକର ।। (୪)

'ତୁମର ମୁଁ', 'ତୁମର ମୁଁ' ଏହି ଭାବଗତ,
ଅଭ୍ୟାସ କରିବି ପ୍ରଭୁ ଯେପରି ନିରତ ।
'ପତିତପାବନ' ରାମ ତୁମେ ସୀତାପତି,
ଶୁଣିବନି ପତିତର ଏତିକି ମିନତି ? (୫)



## (ଗୁହାରୀ ଦୁଇ)

ହେ ରାମ ଲୋକାଭିରାମ ପଙ୍କଜ ଶ୍ରୀମୁଖ
ତୁମେ ଜାଣ ତୁମ ପ୍ରତି କେତେ ମୁଁ ବିମୁଖ ।
ଏ ମାୟା ସଂସାର ଜାଲେ ପଡ଼ି ଅହରହ
ତୁମ ପଦେ ଚିତ୍ତ କରି ପାରୁନାହିଁ ଥୟ ।
ମୋ ଇନ୍ଦ୍ରିୟ ତୃପ୍ତି ପାଇଁ ଆହେ ମନୋରମ
ମନ ଯାଏ ଏଣେ ତେଣେ ବୁଲା ଶ୍ୱାନ ସମ ॥୧॥

ଯାଉ ମନ ଯହିଁ ତହିଁ ନାହିଁ ମୋ ଶୋଚନା
କେବଳ କରୁଛି ପ୍ରଭୁ ଏତିକି କାମନା,
ଏତିକି ପ୍ରାର୍ଥନା ପ୍ରଭୁ ତୁମ ଶ୍ରୀପୟରେ
ମନେ ଏଇ 'ଭାବ' ମୋର ରଖ ନିରନ୍ତରେ। ॥୨॥

ସଂସାରର ସବୁକିଛି ତୁମରି ସ୍ୱରୂପ,
ଲୀଳାମୟ ସବୁ ତୁମ ରୂପ ପ୍ରତିରୂପ ।
ଯହିଁ ଯାଏ ମନ ତହିଁ ତୁମେ ଥାଅ ରହି,
ସବୁଥିରେ ତୁମ ରୂପ ଛବିକୁ ଦେଖଇ। ॥୩॥

ତୁମର ଏ ସର୍ବବ୍ୟାପୀ ରୂପ ଦରଶନେ,
ମୋ ହୃଦ-ମୟୁରୀ ନାଚୁ- ଥାଉ ସଂଗୋପନେ ।
ଏଇ କୃପାକର ମୋତେ ପ୍ରଭୁ ସୀତାପତି,
ତବ ପଦେ ଜଣାଉଛି ଆକୁଳ ମିନତି । ॥୪॥



# (ଗୁହାରୀ ତିନି)

ଆହେ ସୀତାପତି ତ୍ରିଭୁବନ ପତି
ରାଜୀବ ଲୋଚନ ରାମ,
କରୁଛି ମିନତି ଘେନ ମୋ ପ୍ରଣତି
ଦୀନବନ୍ଧୁ ପୂର୍ଣ୍ଣକାମ । ॥୧॥

କରିଛି ଜୀବିକା ବୃଥା ଅହମିକା
ଛନ୍ଦି ହୋଇ ମାୟା ଜାଲେ,
ହୋଇ ଅଭିମାନୀ ଅଜ୍ଞାନେ କେବଳ
'ଭକତ' ବୋଲି ବିଚାରେ । ॥୨॥

ମୋ ସମ ପାତକୀ ଅଛି କେ ନାରକୀ
ଏ ମହୀମଣ୍ଡଳେ ପ୍ରଭୁ।
ଅହମିକା ଜାଲେ ପଡ଼ି ମନେ ଭାଲେ
ମୋତେ ଯେହ୍ନେ ଜଣା ସବୁ। ॥୩॥

ମୋର ବୃଥା ଗର୍ବ କର ହେଲେ ଖର୍ବ
ମୁହିଁ ତ ତୁମରି ଦାସ,
ତୁମେ କି ମୋହର ନୁହଁ ରଘୁବର !
ମୋ ପ୍ରତି ହୁଅ ଉଦାସ ॥୪॥

ଏ ରୂପ ଗର୍ବର ଗଣ୍ଠିଲି ମୋହର
ମୁଣ୍ଡରୁ ଓହ୍ଲେଇ ଦିଅ।
ଥକି ପଡ଼ିଲିଣି ଅନ୍ଧ ହୋଇଲିଣି
ହାତ ଧରି ମୋର ନିଅ।। ॥୫॥

କେବଳ ଭକ୍ତିରେ ହୃଦର ପ୍ରୀତିରେ

ତୁମେ ଥାଅ ଛାଇପରି ।

ତୁମେ ଦୀନବନ୍ଧୁ ପତିତର ବନ୍ଧୁ

କରୁଣା କେତନ ଧରି । ॥୬॥

ଏ ମୋର ମରମେ ସବୁ ଧର୍ମେ କର୍ମେ

ତୁମରି ପରଶ ପାଏ,

ତୁମ ଛଡ଼ା ଆଉ କହ ମହାବାହୁ

କାହିଁ ଅବା କିଛି ଥାଏ ? ॥୭॥

ଏଇ କଥା ମୋର ହୃଦେ ବାରବାର

ଲାଖି ଥାଉ ଅନୁକ୍ଷଣେ,

ଏତିକି ମିନତି କରେ ସୀତାପତି

ତୁମ ରଙ୍ଗା ଶ୍ରୀଚରଣେ । ॥୮॥



## (ଗୁହାରୀ ଚାରି)

କେତେ ପାପ କଲି
ଜୀବନେ ମୋହରି
ଲୁଚାଇ ଛପାଇ ପ୍ରଭୁ।
ଏହି ହୃଦ କୋଣେ
ରହି ଅନୁକ୍ଷଣେ
ଜାଣିଅଛ ତୁମେ ସବୁ।। ॥୧॥
ଭଣ୍ଡ ଧର୍ମଧ୍ୱଜା
ଉଡ଼ାଇ ମୁଁ ପୂଜା
କରିଛି ତୁମରି ଖାଲି।
ତଥାପି ତ ତମେ
ଏ ନୀଚ ଅଧମେ
ଛାଡ଼ି ଯାଇ ନାହଁ ଚାଲି । ॥୨॥

"ସଦା ମୁଁ ତୁମର,
ତୁମେ ବି ମୋହର" -
ଏଇ ସତ୍ୟ ନିରନ୍ତରେ।
ଏ ପ୍ରାଣ ପୀଡ଼ିତ
କରୁ ଉଦ୍‌ବେଳିତ
ମୋ ଅନ୍ତିମ ଜୀବନରେ । ॥୩॥

କରେ ମୁଁ ମିନତି
ଆହେ ରଘୁପତି
ରଖ ଶ୍ରୀଚରଣେ ତବ।

କହ ପ୍ରାଣ ଖୋଲି

‘ତୁମର ମୁଁ’ ବୋଲି

କରିବାକୁ ଅନୁଭବ ।  ॥୪॥

ହେ ଦୀନ-ଆଶ୍ରୟ

ଏଥିରେ ସଂଶୟ

ତିଳେ ନରହୁ ମୋ ଚିତେ,

ପୂର୍ବ ସ୍ମୃତି ଯାହା

ଜାଗୁ ନିରନ୍ତର

ମନରେ ମୋର କିଞ୍ଚିତେ।  ॥୫॥



## (ଗୁହାରୀ - ପାଞ୍ଚ)

ହେ ଜାନକୀ-ଧନ ରାଜୀବ ଲୋଚନ ଶ୍ରୀରାମ

ଆଧି ବ୍ୟାଧି ଭୋଗୀ ଏ ଦାସ କପାଳେ

ନାହିଁ କି ଟିକିଏ ଆରାମ ?

କେ କେତେ ଡାକିଛି ତମେ କାନ ଡେରି ଶୁଣିଛ

ମୋ ବେଳକୁ କିଆଁ ଉଦାସରେ ଶୋଇ ରହିଛ ?

ଭକତ ନହେଲି ହେଲା, ନୁହଁଇ କି ମୁହିଁ ତୁମର,

ଯା’ପାଇଁ ଉଡ଼ାଅ ଧ୍ୱଜା ସେହିତ ‘ପତିତ’ ମାତର।

ଆଣ୍ଠୁ ଗଣ୍ଠି ସାଥେ ଶତ ରୋଗ ଖଞ୍ଜି ଦେହରେ,
ପାଏ ପୀଡ଼ା, କେମ୍ନ ମନ ନେବି ରଙ୍ଗା ପୟରେ ?

ସହିବା ଶକତି ଦିଅ ମନ ତଳେ ମୋହରି,
ପୀଡ଼ା ଭୁଲି ପ୍ରାଣେ ଯେମ୍ନେ
ଜପେ ନାମ ତୋହରି ॥



## (ଗୁହାରୀ - ଛଅ)

ହେ ପଙ୍କଜ ମୁଖ ଦୁନିଆର ଦୁଃଖ ରୋଗ ବ୍ୟାଧି ଅସୁମାରୀ,
ଦାରିଦ୍ର୍ୟ କଷଣ ଜରା ଓ ମରଣ ପ୍ରାଣ ପକାଉଛି ଘାରି ।୧।
କେତେ ଭୟଙ୍କର ରୂପ ଯେ ତୁମର ଭୟ ଲାଗେ ପ୍ରାଣ ପୁରେ,
ନ ଚିହ୍ନି ତୁମକୁ ତୁମ ଏ ରୂପକୁ ପଳାଏ ମୁଁ ଡରି ଦୂରେ ।୨।
କିନ୍ତୁ ହେ ଚତୁର- ଖେଳାଳୀ ତୁମର ରୂପ ବହୁରୂପୀ ପରା,
ପାଶେ ମୋ ଆସୁଛ ବିକଳ କରୁଛ ଟିକିଏ ନ ଦେଇ ଧରା ।୩।
ସମସ୍ତଙ୍କ ପରି ପଳାଉଛି ଡରି ତୁମ ଏ ଅଧମାଧମ,
ଚିହ୍ନି ମୁଁ ନପାରି ହେ ପ୍ରିୟ ଖେଳାଳୀ ଖେଳେ ଆନଲୋକ ସମ ।
ସବୁ ପରା ତୁମେ, ତୁମେ ସବୁ ରୂପେ, ଆସୁଛ ସଭିଙ୍କ ପାଶେ
ନ ଚିହ୍ନି ତୁମକୁ ତୁମ ସେ ରୂପକୁ ସକଳେ ପଳାନ୍ତି ତ୍ରାସେ ।
ଏତିକି ମିନତି କରେ ସୀତାପତି ତୁମରି ଚରଣ ତଳେ ।
ପ୍ରତି ରସ ରୂପେ ତୁମରି ସ୍ୱରୂପେ ଦେଖୁଥିବି ଜୀବନରେ ।।



## (ଗୁହାରୀ -ସାତ)

ହେ ନଈକୂଳିଆ    ଗହୀର ମଝିଆ    ସରପାରି ରଘୁନାଥ,
ତୁମ ଦାସୀ ଦାସେ    ଆଜି ପରବାସେ    ଜଣାବନ୍ତି ଯୋଡ଼ିହାତ ।
ଦେଖି କେଉଁ ଦୋଷ    ତବ ଅସନ୍ତୋଷ    ତମ ବେନି ଜନ ପରେ,
ଆହେ ମହାମନା    ଦେଇନ ସୂଚନା    କାହିଁ କେତେବେଳେ ଥରେ ।।୧।।

ଚାକର ବାକର    ଅଛନ୍ତି ତମର    କରି ନୀତି ଅବହେଳା,
ତୁମ ପୂଜାବିଧି    ଭଲେ ନ ସମ୍ପାଦି    କହନ୍ତି 'କଅଣ ହେଲା' ।
ଏ କି ତୁମ ମତ    ହେ ଭକତ ରଙ୍କ    ତୁମେ କି କରାଅ ସବୁ,
ପର କଲା କର୍ମ    ଆମରି ଅକର୍ମ    ଭାବ ବିନୋଦିଆ ପ୍ରଭୁ ।।୨।।

ଆମରି ଯା ଗର୍ବ    କରିବାକୁ ଖର୍ବ    ତୁମେ କି ଏ ରୀତି ଧର ?
ସେବା ଅହଂକାର    ଛଡ଼ାଇ ଆମର    କି ରଖୁଛ ରଘୁବର ?
ପୁଣି ଆସେ ମନେ    ଏ ଦୂର ପ୍ରବାସେ    ସେ ତ ଯନ୍ତ୍ରୀ, ଆମେ ଯନ୍ତ୍ର,
ସବୁର ସେ କର୍ତ୍ତା    ସବୁର ହିଁ ଭୋକ୍ତା    ଘେନିବା ଆମେ ଏ ମନ୍ତ୍ର ।।୩।।



## (ଗୁହାରୀ - ଆଠ)

ଛୋଟିଆ ଏ ପୃଥିବୀରେ ଅତି ଛୋଟ କୀଟ ମୁହିଁ କାହିଁ,
କେମନ୍ତେ କରିବି ମନ ତୁମ ଅନ୍ତ କାହିଁ, ତାହା ଜାଣିବାର ପାଇଁ ।।୧।।

ତୁମ ରୋମେ ରୋମେ ପରା ଅନନ୍ତ ବ୍ରହ୍ମାଣ୍ଡ ମାଳା ଝୁଲେ ଅହରହ,
ତାହାରି ଯେ ଥଳକୂଳ କଳ୍ପନାର ବହୁଦୂର
ଏ ସଂସାରେ କେ ଜାଣିବ କହ ? ।।୨।।

ତଥାପି ହେ ସର୍ବାଧାର ନୁହଇ କି ଏ ବିଚାର, ସେ ବ୍ରହ୍ମାଣ୍ଡମାଳେ,
ମୁହିଁ ମୂଢ଼ ଅକିଞ୍ଚନ କ୍ଷୁଦ୍ରତମ କୀଟ ଛାର ତୁମରି ଆଧାରେ । ।।୩।।

ତୁମରି ଆଧାରେ ସ୍ଥିତ ଏ ଜୀବନେ ଏଇ ତତ୍ତ୍ୱ ନାଚୁ ନିରନ୍ତରେ,
ପ୍ରଭୁ କର ଅନୁଗ୍ରହ କରେ ଯେହ୍ନେ ଅନୁଭବ
ଅଛି ବୋଲି ତୁମରି ଭିତରେ । ।।୪।।

ତୁମେ ମୋତେ କରିଛ ଧାରଣ,
ତେଣୁ କିଆଁ ହେବି ବ୍ୟାଧି ଯନ୍ତଣାରେ ଖିନ୍ନ
ଭୟଭୀତ ମନ !!
ଏତିକି ଭରସା ପ୍ରଭୁ ଏତିକି ପ୍ରତୀତି
ହେ ଦୟାସାଗର ରାମ
ଦୟାକରି ମୋତେ ଦେବନି କି ? ।।୫।।



## (ଗୁଜ୍ଜାରୀ - ନଅ)

ଶୁଣିଲି ପଢ଼ିଲି ଲେଖିଲି କହିଲି ପ୍ରଭୁ ହେ ତୁମରି କଥା,
ତୁମେ ପରଂବ୍ରହ୍ମ ପୁରୁଷ ପରମ ତୁମେ ସର୍ବମୟ କର୍ତ୍ତା ।

ସଂସାର ତୁମରି ତୁମେ ଅଛ କରି ତୁମ ଛଡ଼ା କେହି ନାହିଁ
ତୁମେ ପିତା ମାତା ଭାଇ ବନ୍ଧୁ ଭର୍ତ୍ତା ଅଖିଳ ଜଗତ ସାଇଁ ।

ତୁମେ ସିନା କର କରାଅ ସକଳ ବୃଥା ଗର୍ବ ଅହଂକାରେ
ଅଜ୍ଞାନ ପ୍ରଭାବେ ମୁହିଁ ମନେ ଭାବେ "ମୁଁ କରୁଛି' ଏ ସଂସାରେ ।

ହୃଦୟେ ମୋହରି ଅହମିକା ଭରି ମୁଁ କର୍ତ୍ତା ବୋଲାଏ ଭବେ
ଏଥିରେ ମୁଁ କାହୁଁ ଆହେ ମହାବାହୁ କୃପାତବ ଅନୁଭବେ ?

ତାପେ ସନ୍ତାପିତ ଦୁଃଖରେ ଦ୍ରବୀତ ଅଭାବରେ ଆକୁଳିତ
'ମାନରେ' ପୀଡ଼ିତ ସ୍ୱକର୍ମେ ଗର୍ବିତ ଭୟେ ହୁଏ ବ୍ୟାକୁଳିତ ।

ବୃଥା ଗର୍ବେ ଫୁଲି ଯାଏ ଏହା ଭୁଲି ତୁମେ ଯେ କରାଅ ସବୁ,
ଅନୁକୂଳେ ତୋଷ ପ୍ରତିକୂଳେ ଦୋଷ ଆରୋପେ ତୁମଠିଁ ପ୍ରଭୁ ।

ହେ ରଘୁନନ୍ଦନ ଜାନକୀ ଜୀବନ ବିଶ୍ୱ ତୁମ ଗୀତି ଗାଏ,
ତୁମ ଅନୁଗ୍ରହେ ପ୍ରତି କର୍ମେ ଯେହ୍ନେ ମୁଁ ତବ ପରଶ ପାଏ ।

ଦିଅ ସେହି ଭକ୍ତି ଏତିକି ମିନତି ଜଣାଉଛି ଦୟାମୟ,
ଶୟନେ ସପନେ କିବା ଜାଗରଣେ ଦେଖେଁ ସର୍ବ ରାମମୟ ।



## (ଗୁହାରୀ - ଦଶ)

ଷୋଳ ଶିରା ଦୁହିଁ ଜନନୀ ମୋହର ଧରଣୀରେ ଦେଇ ଥାନ,
ତା'ଜୀବନ ରସ ଦେଲା ଉଜୁଡ଼ାଇ ଦେଇ ବୁକୁ ଥନପାନ ।।
ନିଗିଡ଼ା ସିନହ- ଧାର ବୁହାଇଲା ଅଯାଚିତେ ଅକାତରେ
ସେ ମାତାଙ୍କୁ ମୋର କେମ୍ନେ ପାଶୋରିବି ଏଇ ମୋର ଜୀବନରେ ?
ପିତାଙ୍କ ମମତା ସ୍ନେହ ବତ୍ସଳତା ଭାବିଲେ ମରମ ଝୁରେ,
କାହିଁ କେତେକାଳୁ ଯାଇଛନ୍ତି ଚାଲି ରହିଥିବେ କେଉଁ ପୁରେ ?
ପତ୍ନୀ ରତି ପ୍ରୀତି ପ୍ରେମର ବନ୍ଧନେ ସରସ ସେ ଚଲାପଥ,
ଆଜି ବି ଜୀବନେ ଭରେ ମାଦକତା ମନେ ପଡ଼ି ଅବିରତ ।
ସନ୍ତାନଙ୍କ ଭକ୍ତି ସଦା ଅନୁରକ୍ତି ବନ୍ଧୁଙ୍କ ମିତ୍ରତା ପାଇ,
କେତେ ଯେ ସରସ ହେଉଛି ଜୀବନ କିଏ ପାରେ ଭୁଲି କାହିଁ ?
ଏ ସବୁରେ ମୁହିଁ ଅନ୍ଧ ହୋଇଗଲି ତୁମକୁ ପାଶୋରି ହେଳେ,
ଏ ଜନେ କୋଳେଇ ତୁମକୁ ଦୂରେଇ ଦେଇଅଛି ଅବହେଳେ ।
ହେ ମୋ ପ୍ରାଣ ପ୍ରଭୁ ଏ କଥା ନୁହେଁ କି ମାତା ରୂପେ ତୁମେ
ଢାଳିଲ ବାତ୍ସଲ୍ୟ ପ୍ରୀତି
ପିତାଙ୍କ ବାତ୍ସଲ୍ୟେ ବନ୍ଧୁ ମିତ୍ରତାରେ କହ ତୁମେ ଥାଅନିକି ?
କେତେ ଦୁଷ୍ଟ ଶିଷ୍ଟ ବଇରି ବାନ୍ଧେବ ରୂପେ ଆସିଅଛ ହରି
ମୋର ଏ ତରଳ ମନକୁ ଚଞ୍ଚଳ କରିବାକୁ କେଉଁପରି ।
ସନ୍ତାନ ସନ୍ତତି ଭକ୍ତି ଅନୁରକ୍ତି ରୂପେ ତୁମେ ଆଶ ପାଶେ,
କୁକର୍ମେ ସୁକର୍ମେ ଯଶ ଅପଯଶ ହୋଇ କହ କିଏ ଆସେ ?
ସବୁ ଭାବ ରାଶି ମୂଳ ସ୍ରୋତ ସିନା ତୁମେ ଭବ ପାରାବାର,
ଏ ସବୁ ଲେଉଟି ଯାଆନ୍ତେ ମିଳେଇ ସେ ସିନ୍ଧୁରେ ପୁନର୍ବାର ।
ସବୁ 'ଭାବେ' ସବୁ 'ସମ୍ବନ୍ଧେ' ଯେପରି ପାଉଥିବି ରଘୁବର
ତମରି କରୁଣା, କରିବନି ଊଣା, ମାତ୍ର ଏହି ଦୟାକର ।



## (ଗୁହାରୀ - ଏଗାର)

ମୋ ଜୀବନ ଦୀପ ସଳିତା ହେ ପ୍ରଭୁ
ସରି ଆସେ ଅହର୍ନିଶି ।
ମୋ ଆରତି କିନ୍ତୁ ସରୁନାହିଁ କିଆଁ ?
ଦେଖୁନାହିଁ ବାଟ କିଛି । ।ଘୋଷା।
'ତୁମର ମୁଁ' ବୋଲି କହୁଥାଏ ସିନା
ଆତ୍ମା ହୁଏ ହାଇଁ ପାଇଁ
ଭାବିଲେ ଏକଥା ପାଏ କେତେ ବ୍ୟଥା
ବଖାଣିବି ଯାଇ କାହିଁ ?
ଟିକେ ପାରିଲିନି ନିଜକୁ ସଜାଡ଼ି
ଉଜାଡ଼ିଲି ଭକ୍ତ-ପଣ।
ଏ ସାରା ଜୀବନ ହେଲା ଅକାରଣ
ନ ଗଲା ତୋ ପାଦେ ମନ।
ଜଳ ସ୍ରୋତେ ଭାସି ପୀଡ଼ିତ ପ୍ଲାବିତ
ବୃକ୍ଷଟିଏ ଯେଉଁପରି
ଏ ସଂସାର ସ୍ରୋତେ ଭାସି ଯାଉଅଛି
ରଖ ମୋତେ କୃପା କରି ।
ତୁମ ଛଡ଼ା ଆଉ କିଏ ଅଛି ମୋର
କେଉଁଠି କରିବି ଅଳି
ବିଷୟ ବାସନା ପ୍ରତି ଅନୁରାଗ
ଦିନୁ ଦିନ ଯାଏ ବଳି।।

ମନ ପକ୍ଷୀ ମୋର ହୁଏ ଛଟପଟ
ଏ ସଂସାର ଜାଲେ ପଡ଼ି
ଅଳୀକ କ୍ଷଣିକ ସଂସାର ବନ୍ଧନେ
ସ୍ରୋତ ନେଉଅଛି ତଡ଼ି ।
ଏଇ ମୋ ଆରତି ଆହେ ସୀତା ପତି
ଏ ସଙ୍କଟୁ ମୋତେ ରଖ,
ଉଡ଼ିବା ଶକତି ମୋର ନାହିଁ ପ୍ରଭୁ
କଟି ଯାଇଅଛି ପକ୍ଷ ।
ହେ ମୋହର ସ୍ୱାମୀ ପ୍ରଭୁ ଅନ୍ତର୍ଯ୍ୟାମୀ
ଜାଣିଲିଣି ସିନା ଏବେ
ଏ ମନକୁ ମୋର ତୁମରି ପୟରେ
ବାନ୍ଧି ପାରିବିନି କେବେ ।
ମୋ ଶକତି କେତେ ମୋ'ଯତନ ଯେତେ
ପ୍ରଭୁ ସବୁ ମୋତେ ଜଣା ।
ତଥାପି ସେ ପଦ୍ମ-ପାଦ-ମଧୁ ପ୍ରଭୁ
କରିଅଛି କଳପନା ।
ମୁଁ ଯେବେ ତୁମର ମୋତେ କୃପାକର
ତମେ ନିଜେ ଦୟା କରି,
ମୋ ବୁଲା-ମନକୁ ତୁମରି ପୟରେ,
ବାନ୍ଧି ରଖ ବଳେ ଧରି ।



(ଗୁହାରୀ - ବାର)

ତୁମ ସମ ସ୍ୱାମୀ ଅଛି ଜଗତେ କେ ଜଣେ
ଦେଖା ନାହିଁ ଶୁଣା ନାହିଁ ତିନି କାଳେ ଅବା ତିନି ଭୁବନେ ।। (ଘୋଷା)

ସ୍ୱାମୀଏ କରନ୍ତି ଶ୍ରଦ୍ଧା ପୁଣ୍ୟବନ୍ତ ଜନେ,
ତୁମେ ଆଦରିଛ ଯେତେ ପାପୀ ନରାଧମେ ।

ପାପୀ ଅଜାମିଳ ଦସ୍ୟୁ ରତ୍ନାକର ପୁଣି
ତୁମ କୃପା ବଳେ ତରି ହେଲେ ମହାମୁନି । ।

ଭବ ତରିବାକୁ କେତେ ସାଧ୍ୱୀ ସତୀ ନାରୀ,
ଧାଡ଼ି ବାନ୍ଧିଥାନ୍ତି ଲଭିବାକୁ କୃପା ବାରି ।

ହେ କୃପାଳୁ ତୁମେ କିନ୍ତୁ ଧାଇଁଗଲ ପରା
ପିଙ୍ଗଳା ଦୁଆରେ ଧରି ମୁକ୍ତିର ପସରା ।

ପତିତଙ୍କୁ ତାରି ତୁମେ ପତିତପାବନ,
ଉଡ଼ାଉଛ ଯୁଗେ ଯୁଗେ ବିଜୟ କେତନ ।

ମୁହିଁ ତ ପତିତ ଜଣେ ପାପୀ ତାପି ହୀନ
ମୋ ବେଳକୁ ହେଲ କିଆଁ  କେତନ ବିହୀନ ?

ଘୃଣ୍ୟ ଇନ୍ଦ୍ରିୟଙ୍କୁ ଆଉ ମୋ ହୀନ ମନକୁ
ତୋଷିବାକୁ ଲୋଡ଼େ ଯେବେ ବସ୍ତୁ ସକଳକୁ
ତିଳ ତିଳ କରି ଦେଲି ଜୀବନକୁ ଜାଳି
ତେବେ ତମେ ଦେଲ ମତେ ବେଦନା ଜୁଆଳି ।

ରୋଗ ବ୍ୟାଧି ଦେଇ ମୋତେ ରକ୍ଷାକଲ ସ୍ୱାମୀ,
ନୋହିଲେ ମୁଁ ହୋଇଥାନ୍ତି ମହା ନର୍କଗାମୀ।

ରାସ୍ତାକଡ଼ ଧୂଳିଟାକୁ କୃପା କଲ ଏତେ,
କେହ୍ନେ ବଖାଣିବି ପ୍ରଭୁ କୃତଜ୍ଞ ମୁଁ କେତେ।

କେତେ କୃପା କରିଅଛ ହେ ପ୍ରଭୁ ମୋ ଠାଇଁ
କେବଳ ଏତିକି କର ଗୁହାରୀ ଗୋସାଇଁ।

ସବୁ ଦିନ ପାଇଁ ଦିଅ ସ୍ଥାନ ଶ୍ରୀଚରଣେ
ଛାର ଧୂଳିକଣା ମୁହିଁ ଭ୍ରମା ନାହିଁ ମୋତେ ଅକାରଣେ।



**ସତ୍ୟାନନ୍ଦ ଚମ୍ପତିରାୟ**

# ଶ୍ରୀ ହନୁମାନ୍ ସହସ୍ରନାମ ପୂଜା ଅର୍ଚ୍ଚନା
## ଉପାସନା ପ୍ରସ୍ତୁତି

ପ୍ରଭୁ ଶ୍ରୀହନୁମାନଜୀଙ୍କ ଉପାସନା ପାଇଁ ଛୋଟ ବଡ଼ ଅନେକ ଗ୍ରନ୍ଥ ଅଛି ଓ ତାଙ୍କ ସ୍ତୁତି ସମ୍ପର୍କରେ ଶାସ୍ତ୍ରରେ ବିସ୍ତୃତ ବର୍ଣ୍ଣନା କରାଯାଇଛି । ଶ୍ରୀହନୁମାନ ଚାଳିଶା, ସଙ୍କଟମୋଚନ ହନୁମାନାଷ୍ଟକ, ଶ୍ରୀହନୁମାନ ସହସ୍ର ନାମ, ପଞ୍ଚରତ୍ନ ସ୍ତୋତ୍ର ତଥା ଅଦ୍ୱୈତ ବେଦାନ୍ତବାଦୀ ଶ୍ରୀଶଙ୍କରାଚାର୍ଯ୍ୟ ଏବଂ ପରବର୍ତ୍ତୀକାଳରେ ସମସ୍ତ ଆଚାର୍ଯ୍ୟଗଣ ଶ୍ରୀମାରୁତିନନ୍ଦନଙ୍କର ଉପାସନା କରିବା ପାଇଁ ବହୁତ ସ୍ତୋତ୍ର ଆଦି ରଚନା କରିଯାଇଛନ୍ତି । ତେଣୁ ଶ୍ରୀହନୁମାନଜୀଙ୍କ ଉପାସନା ସବୁ ସମୟରେ, ସବୁ କାଳରେ, ସନ୍ଥ ସଦ୍‌ଗୃହସ୍ଥ ଓ ଭକ୍ତମାନଙ୍କ ଦ୍ୱାରା ହୋଇ ଆସୁଛି ।

ଉପାସନା ପାଇଁ ପ୍ରଥମେ ଶୁଦ୍ଧତା ଓ ଶୌଚାଚାର ଏକାନ୍ତ ଆବଶ୍ୟକ । ଶୌଚାଚାର ଦୁଇ ପ୍ରକାରର । ଯଥା :- ବାହ୍ୟଶୁଚି ଓ ଅର୍ନ୍ତଶୁଚି । ନିଜ ଶରୀରକୁ ପରିଷ୍କାର ରଖିବା, ଝାଡ଼ା ପରିସ୍ରା କରି ଜଳ ନେବା ଓ ମାଟିରେ ହାତ ମାଜିବା, ଗୋଡ଼ ହାତ ପାଣିରେ ଭଲ ଭାବେ ଧୋଇ ସଫା ଲୁଗା କିମ୍ବା ପଟ୍ଟବସ୍ତ୍ର ପରିଧାନ କରିବା ପ୍ରଭୃତି ବାହ୍ୟଶୁଚିର ଅନ୍ତର୍ଗତ । ପରନିନ୍ଦା ନକରିବା, ପରନିନ୍ଦା ନଶୁଣିବା, ନିଜର ପ୍ରଶଂସା ନିଜେ ନକରିବା ଓ ନଶୁଣିବା, ମନ ପବିତ୍ର ରଖିବା ଅର୍ନ୍ତଶୁଚି ଭାବେ କଥିତ ।

୧. ବ୍ରାହ୍ମମୁହୂର୍ତ୍ତରେ ସ୍ନାନସାରି ଧୌତବସ୍ତ୍ର କିମ୍ବା ପାଟବସ୍ତ୍ର ପିନ୍ଧି ଠାକୁର ପୂଜା ପାଇଁ ନିର୍ଦ୍ଦିଷ୍ଟ ଥିବା ଆସନରେ ପୂର୍ବ କିମ୍ବା ଉତ୍ତର ଦିଗକୁ ମୁଖ କରି ବସିବ । ଶ୍ରୀହନୁମାନଜୀଙ୍କ ଫଟଚିତ୍ର କିମ୍ବା ବିଗ୍ରହଙ୍କୁ ଯେଉଁ ଘରେ ସ୍ଥାପନା କରିବ ତାହା ଗୋମୟ ବା ଶୁଦ୍ଧ ଜଳରେ ଲିପି ପୋଛି ସଫା କରିବ । ସମ୍ମୁଖରେ ଶ୍ରୀହନୁମାନଜୀ ମହାରାଜଙ୍କ ଫଟୋ ବା ବିଗ୍ରହକୁ ପ୍ରୀତିପୂର୍ବକ ଭକ୍ତି ସହକାରେ ଶୁଦ୍ଧ ଆସନରେ ବସାଇ ନୂତନ ବସ୍ତ୍ର ସମର୍ପଣ କରିବ, ଶୁଦ୍ଧ ଘୃତର ଦୀପଟିଏ ଜଳାଇବ ଓ ଧୂପ ବା ଝୁଣା ଧୂଆଁରେ ଗୃହଟି ସୁବାସିତ କରାଇବ ।

**ଉପକରଣ** - ମନ୍ଦାରଫୁଲ = ୧୦୦୮, ଦୁବ, ହଳଦିଆ ଅକ୍ଷତ ମନ୍ଦାର ଫୁଲ ନମିଳିଲେ ଅନ୍ୟ ଯେକୌଣସି ସୁବାସିତ ଫୁଲ, ତୁଳସୀପତ୍ର ମଞ୍ଜରୀ; ସରଜୁ କିମ୍ବା ଗଙ୍ଗାଜଳ, ପଞ୍ଚାମୃତ - ଘିଅ, ଦୁଧ, ଦହି, ମହୁ, ଗୁଡ଼, ଶୁଦ୍ଧ ଘିଅରେ ପ୍ରଭୁଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ଭାବି, ଲାଳସା ନରଖି (ନିଶ୍ୱାସ ପ୍ରଶ୍ୱାସ ନବାଜିଲା ଭଳି) ନିଜକୁ ଶୁଦ୍ଧ ରଖି ନିଜେ କିମ୍ବା ଅପର ଶୁଦ୍ଧପୁତ ବ୍ୟକ୍ତି ଦ୍ୱାରା ଶୁଦ୍ଧ ପାତ୍ରରେ ୧୦୦୮ ଲଡୁ ଅନ୍ୟୁନ ୧୧ଟି ପ୍ରସ୍ତୁତ କରି ଘୋଡ଼ାଇ ରଖିବ। ପିତଳ କିମ୍ବା କଂସା ପାତ୍ରରେ ଶୁଦ୍ଧ ଜଳ ରଖିବ।

**ଆଚମନ ଭୂତଶୁଦ୍ଧି** - ଡାହାଣ ହାତରେ ଜଳ ଧରି "ଓଁ ରାମାୟ ନମଃ, ଓଁ ରାମଭଦ୍ରାୟ ନମଃ, ଓଁ ରାମଚନ୍ଦ୍ରାୟ ନମଃ" ଏହି ମନ୍ତ୍ର ଉଚ୍ଚାରଣ କରି ପୂଜାଘରେ ସେହି ଜଳ ଛିଞ୍ଚିବ ଏବଂ ନିଜେ ଉପରୋକ୍ତ ମନ୍ତ୍ର କହି ହାତପାପୁଲିରେ ଜଳ ନେଇ ୩ଥର ଆଚମନ କରିବ। ଆଚମନ ବେଳେ ମନେ ମନେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ସ୍ମରଣ କରି ମୋର ଗୃହ ଶୁଦ୍ଧ ହେଲା ଓ ନିଜ ଶରୀର ପବିତ୍ର ହେଲା ବୋଲି ଭାବିବ।

**ଉପଚାର** -

୧. ପ୍ରଭୁଙ୍କୁ ଶୁଦ୍ଧ ଜଳରେ ସ୍ନାନସାରି ଶୁଦ୍ଧ କନାରେ ପୋଛିବ।

୨. ଆଚମନ କରିବ - "ଓଁ ହୁଁ ହନୁମତେ ନମଃ;" ଶଙ୍ଖରେ ଶୁଦ୍ଧ ଜଳନେଇ ଆଚମନ କରାଇବ।

୩. ପଞ୍ଚାମୃତ ମିଶାଇ ୭ଟି ଦୁବରେ ବୁଡ଼ାଇ ଉପରୋକ୍ତ ମନ୍ତ୍ର ପଢ଼ି ସମସ୍ତ ପୂଜା ଦ୍ରବ୍ୟରେ ଛିଞ୍ଚି ଦ୍ରବ୍ୟ ଶୁଦ୍ଧି ହେଲା ବୋଲି ଭାବିବ।

ବର୍ତ୍ତମାନ ବିଗ୍ରହ କିମ୍ବା ଫଟଚିତ୍ର ବାମ ପାର୍ଶ୍ୱରେ ରଖି ପୂଜା ପାଇଁ ଉଦ୍ଦିଷ୍ଟ କମ୍ବଳ କିମ୍ବା କୁଶ ଆସନରେ ବସି ଉତ୍ତର ବା ପୂର୍ବ ଦିଗକୁ ମୁହଁକରି ପ୍ରଭୁଙ୍କ ଚରଣ ଯୁଗଳ କିମ୍ବା ମୁଖକମଳକୁ ଅନାଇ ରହିବ। ନୂତନ ବସ୍ତ୍ର (ଧଳା କିମ୍ବା ଲାଲ ରଙ୍ଗ) ପିନ୍ଧାଇ ପ୍ରଥମେ ଚନ୍ଦନ, ପରେ ସିନ୍ଦୂର ପ୍ରଭୁଙ୍କ କପାଳରେ ଲଗାଇବ। ଯଜ୍ଞୋପବୀତ ପିନ୍ଧାଇ ସୁଗନ୍ଧ ପୁଷ୍ପମାଳ ପ୍ରଭୁଙ୍କୁ ପିନ୍ଧାଇ ଦେବ।

**ନୈବେଦ୍ୟ ନିବେଦନ** - ଡାହାଣ ହାତରେ ଜଳ ତୁଳସୀ ଧରି ବାମହାତରେ ହାତଘଣ୍ଟି ବଜାଇ ସେହି ତୁଳସୀ ଜଳକୁ ନୈବେଦ୍ୟ ଉପରେ ଓ ଚାରିପଟେ ଛିଞ୍ଚି ବୁଲାଇ ତୁଳସୀ ପକାଇବ। ମନ୍ତ୍ର - "ଓଁ ଶ୍ରୀ ସୀତାରାମାଭ୍ୟାଂ ନମଃ"। ଏହି ମନ୍ତ୍ର ଅନ୍ୟୁନ ୨୭

ଥର ମନେ ମନେ ଜପ କରି ଶ୍ରୀସୀତାଠାକୁରାଣୀ ଓ ପ୍ରଭୁ ଶ୍ରୀ ରାମଚନ୍ଦ୍ରଙ୍କୁ ଭୋଗ ସମର୍ପଣ କରିବ। ତାପରେ ପ୍ରଭୁ ଶ୍ରୀହନୁମାନଜୀ ମହାରାଜଙ୍କୁ ପ୍ରସାଦ ସମର୍ପଣ କରି (ମନ୍ତ୍ର, ଓଁ ହୁଁ ହନୁମତୟେ ନମଃ) ଅନ୍ୟୁନ ୨୭ ଥର ଜପ କରି ମନରେ ଭାବିବ ଯେ ପ୍ରଭୁ ଶ୍ରୀହନୁମାନଜୀ ପ୍ରସାଦ ସେବନ କରୁଅଛନ୍ତି। ପୁଣି ୩ଥର ଆଚମନ କରାଇ "ଓଁ ରାମାୟ ନମଃ, ଓଁ ରାମଭଦ୍ରାୟ ନମଃ, ଓଁ ରାମଚନ୍ଦ୍ରାୟ ନମଃ" ମନ୍ତ୍ର ଜପ କରି ପ୍ରଭୁଙ୍କ ମୁଖ ନୂତନ କନାରେ ପୋଛିଲା ଭଳି କରିବ।

**ଆରତୀ** - ୭ଟି, ୫ଟି କିମ୍ବା ୩ଟି ଘିଅବତୀ ନେଇ ଡାହାଣ ହାତରେ ଦୀପଟି ଧରି, ବାମହାତରେ ଘଣ୍ଟି ବଜାଇ ଆରତୀ କରିବ। ତାପରେ "ସକୃଦେବ ପ୍ରପନ୍ନାୟ ତବାସ୍ମିତ ଚ ଯାଚତେ, ଅଭୟଂ ସର୍ବଭୂତେଭ୍ୟୋ ଦଦାମ୍ୟେତଦ୍ ବ୍ରତ ମମଃ" "ଶରଣା ଗତୋହଂ, ଶରଣା ଗତୋହଂ, ଶରଣା ଗତୋହଂ, ଦାସୋହଂ, ଦାସୋହଂ, ଦାସୋହଂ" ଉଚ୍ଚାରଣ କରି ଭକ୍ତି ସହକାରେ ସାଷ୍ଟାଙ୍ଗ ଦଣ୍ଡବତ କରିବ। ଏହାପରେ ଶ୍ରୀହନୁମାନ ସହସ୍ରନାମ ସ୍ତୋତ୍ର ନିଷ୍ଠା ଓ ଭକ୍ତି ସହ ମନ ସ୍ଥିର ରଖି ପ୍ରଭୁଙ୍କ ପ୍ରୀତି ଓ ସଙ୍କଟ ମୋଚନ ଉଦ୍ଦେଶ୍ୟରେ ପାଠ କରିବ। ପୂଜାପାଠ ମଝିରେ ଉଠିବ ନାହିଁ କିମ୍ବା କଥାବାର୍ତ୍ତା କରିବ ନାହିଁ। ମନ୍ତ୍ର ବୋଲିଲା ବେଳେ, ଓଁ ହନୁମତେ ନମଃ ଠାରୁ ଆରମ୍ଭ କରି ୧୦୦୮ ମନ୍ତ୍ର ଜପ ପର୍ଯ୍ୟନ୍ତ ପ୍ରତ୍ୟେକ ମନ୍ତ୍ର ଉଚ୍ଚାରଣ ପରେ ହାତରେ ଦୂର୍ବା, ହଳଦିଆ ଅକ୍ଷତ ଓ ଗୋଟିଏ ଗୋଟିଏ ଫୁଲ ପ୍ରଭୁଙ୍କ ଚରଣରେ ସମର୍ପଣ କରିବ। ଏହିପରି ସମସ୍ତ ସ୍ତୋତ୍ର ପାଠ ଶେଷ ହେଲା ପରେ ପୁନଃ ସାଷ୍ଟାଙ୍ଗ ପ୍ରଣିପାତ କରି ଉପରୋକ୍ତ ଶରଣାଗତ ମନ୍ତ୍ର ଉଚ୍ଚାରଣ କରିବ। ମନ୍ତ୍ର ପାଠ ସମୟରେ ପ୍ରଭୁ ମୋର ସମସ୍ତ ଅପରାଧ କ୍ଷମା କରନ୍ତୁ ଓ ଆପଣଙ୍କ ଇଚ୍ଛା ପୂରଣ ହେଉ ଏହା ମନେ ମନେ କହି, ନିଜର ମନ, କର୍ମ ବଚନରେ ପ୍ରଭୁଙ୍କୁ ସମର୍ପଣ କରି ପୁନଃ ପୁନଃ ସାଷ୍ଟାଙ୍ଗ ଦଣ୍ଡବତ କରିବ।

**ଆହାର ଶୁଦ୍ଧି** - ମତ୍ସ୍ୟ, ମାଂସ, ଅଣ୍ଡା, ପିଆଜ, ରସୁଣ ଓ ଉତ୍ତେଜିତ ଖାଦ୍ୟ ଖାଇବ ନାହିଁ। ମଦ୍ୟପାନ ଆଦି ମାଦକଦ୍ରବ୍ୟ, ସିଗାରେଟ, ବିଡ଼ି ପିଇବ ନାହିଁ। ଏହା ପ୍ରଭୁ ଉପାସନାର ବିଶେଷ ଅଙ୍ଗ।

ଏହାପରେ ପ୍ରଭୁଙ୍କ ପ୍ରସାଦ ଭକ୍ତମାନଙ୍କ ମଧ୍ୟରେ ବିତରଣ କରି ନିଜେ ତୃପ୍ତି ସହକାରେ ପାଇବ।

**ବିଶେଷ ଦ୍ରଷ୍ଟବ୍ୟ** - ଉପାସନା ପଦ୍ଧତି ସଂପର୍କୀୟ ସବିଶେଷ ଜ୍ଞାନ ଶାସ୍ତ୍ରଜ୍ଞ, ଭଗବତ୍ ନିଷ୍ଠ ସଦ୍‌ଗୁରୁଙ୍କୁ ପଚାରି ବୁଝିନେବ।

# ଶ୍ରୀ ହନୁମତ୍ ସହସ୍ରନାମ
# ପୂଜା ଅର୍ଚ୍ଚନା

ଓଁ ଅସ୍ୟ ଶ୍ରୀହନୁମତ୍ ସହସ୍ରନାମ ସ୍ତୋତ୍ର ମନ୍ତ୍ରସ୍ୟ, ଶ୍ରୀ ରାମଚନ୍ଦ୍ର ଋଷିଃ, ଅନୁଷ୍ଟମ୍ ଛନ୍ଦ, ଶ୍ରୀ ହନୁମାନ ମହାରୁଦ୍ର ଦେବତା, ହ୍ଲାଂ, ଶ୍ରୀଂ, ହ୍ଲୌଂ, ହ୍ଲାଂ ବୀଜମ୍, ଶ୍ରୀଂ ଇତି ଶକ୍ତିଃ, କିଳି-କିଳି ବୁବୁ କାରେଣେତି କୀଳକମ୍, ଲଙ୍କା ବିଧ୍ୱଂସନେତି କବଚମ୍, ମମ ସର୍ବୋପଦ୍ରବ ଶ୍ୟାନ୍ତାର୍ଥେ, ସର୍ବକାମ ସିଦ୍ଧ୍ୟର୍ଥେ ଜପେ ବିନିଯୋଗଃ। ନ୍ୟାସଃ – ଋଷ୍ୟାଦିକଂ ବିନସ୍ୟ। ଓଁ ଐଂ ହନୁମତେ ରାମଦୂତାୟ ଅଙ୍ଗୁଷ୍ଠାଭ୍ୟାଂ ନମଃ, ଓଁ ଲଙ୍କା ବିଧ୍ୱଂସନାୟ ତର୍ଜନିଭ୍ୟାଂ ସ୍ୱାହା। ଓଁ ଅଞ୍ଜନୀଗର୍ଭ ସମ୍ଭୂତାୟ ମଧ୍ୟମାଭ୍ୟାଂ ବଷଟ୍। ଓଁ ଶାକିନୀ-ଡାକିନୀ-ବିଧ୍ୱଂସନାୟ ଅନାମିକାଭ୍ୟାଂ ହୁମ୍। ଓଁ କିଳି-କିଳି ବୁବୁ-କାରେଣ ବିଭୀଷଣାୟ ହନୁମଦ୍ଦେବାୟ କନିଷ୍ଠାଭ୍ୟାଂ ବୌଷଟ୍। ଓଁ ହ୍ଲାଂ, ଶ୍ରୀଂ, ହ୍ଲୌଂ, ହ୍ଲାଂ, କରତଳ କରପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍।

ଓଁ ଐଂ ହନୁମତେ ରାମଦୂତାୟ ହୃଦୟାୟ ନମଃ, ଓଁ ଲଙ୍କା ବିଧ୍ୱଂସନାୟ ଶିରସି ସ୍ୱାହା। ଓଁ ଅଞ୍ଜନୀଗର୍ଭ ସମ୍ଭୂତାୟ ଶିଖାୟେ ବଷଟ୍। ଓଁ ଶାକିନୀ-ଡାକିନୀ-ବିଧ୍ୱଂସନାୟ ଅବଚାୟ ହୁମ୍। ଓଁ କିଳି-କିଳି-ବୁବୁକାରେଣ, ବିଭୀଷଣାୟ ହନୁମଦ୍ଦେବାୟ ନେତ୍ରାଭ୍ୟାଂ ବୌଷଟ୍। ଓଁ ହ୍ଲାଂ, ଶ୍ରୀଂ, ହ୍ଲୌଂ, ହ୍ଲାଂ କରତଳ କରପୃଷ୍ଠାଭ୍ୟାଂ ଫଟ୍ ସ୍ୱାହାଃ।

ଧ୍ୟାନମ୍ -

ଧ୍ୟାୟେତ୍ ବାଳଦିବାକର-ଦ୍ୟୁତିନିଭଂ ଦେବାରିଦର୍ପା ପହଂ
ଦେବେନ୍ଦ୍ର ପ୍ରମୁଖ-ପ୍ରଶସ୍ତଯଶସଂ ଦେଦୀପ୍ୟମାନଂ ରୁଚା।
ସୁଗ୍ରୀବାଦି-ସମସ୍ତ-ବାନରଯୁତଂ ସୁବ୍ୟକ୍ତତତ୍ତ୍ୱ ପ୍ରିୟଂ
ସଂରକ୍ତାରୁଣ-ଲୋଚନଂ ପବନଜଂ ପୀତାମ୍ବରାଳଙ୍କୃତମ୍।୧।
ଉଦ୍ୟାଦାଦିତ୍ୟ ସଙ୍କାଶ ମୁଦାରଭୁଜ ବିକ୍ରମମ୍।
କନ୍ଦର୍ପ କୋଟି-ଲାବଣ୍ୟଂ ସର୍ବବିଦ୍ୟା-ବିଶାରଦମ୍।୨।
ଶ୍ରୀରାମ ହୃଦୟାନନ୍ଦଂ ଭକ୍ତକଳ୍ପ ମହୀରୁହମ୍।
ଅଭୟଂ ବରଦଂ ଦୋର୍ଭ୍ୟାଂ ଚିନ୍ତୟେତ୍ ମାରୁତାତ୍ମଜୀ।।୩।।

ତତ୍ସ୍ତତନ୍ନାମଭିଃ ପ୍ରତ୍ୟେକଂ ପ୍ରଣବାଦିଭିଃ ନମୋଃନ୍ତୈରର୍କ ପୁଷ୍ପାଦି ସମର୍ପଣ କୁର୍ଯ୍ୟାତ୍। ତଦ୍ୟଥା –

(ଧ୍ୟାନପରେ ପ୍ରତ୍ୟେକ ନାମ ଭକ୍ତିରେ ଉଚ୍ଚାରଣ କରି ଅର୍କ କିମ୍ବା ମନ୍ଦାର ପୁଷ୍ପ, ଫଳ, ହରିଦ୍ରାକ୍ଷତ, ଲଡୁ - ଯେକୌଣସି ଏକ ହଜାର ଗଣତି କରି ଗୋଟିଏ ଲେଖାଏ ମନ୍ତ୍ର ସହ ସମର୍ପଣ କରିବେ)।

୧. ଓଁ ହନୁମତେ ନମଃ
ଓଁ ଶ୍ରୀପ୍ରଦାୟ ନମଃ
ଓଁ ବାୟୁପୁତ୍ରାୟ ନମଃ
ଓଁ ରୁଦ୍ରାୟ ନମଃ
ଓଁ ଅଘନାୟ ନମଃ
ଓଁ ଅଜରାୟ ନମଃ
ଓଁ ଅମୃତ୍ୟବେ ନମଃ
ଓଁ ବୀରବୀରାୟ ନମଃ
ଓଁ ଗ୍ରାମବାସାୟ ନମଃ

୧୦. ଓଁ ଜନାଶ୍ରୟାୟ ନମଃ
ଓଁ ଧନଦାୟ ନମଃ
ଓଁ ନିର୍ଗୁଣାୟ ନମଃ
ଓଁ କାୟାୟ ନମଃ
ଓଁ ବୀରାୟ ନମଃ
ଓଁ ନିଧିପତୟେ ନମଃ
ଓଁ ମୁନୟେ ନମଃ
ଓଁ ପିଙ୍ଗାକ୍ଷାୟ ନମଃ
ଓଁ ବରଦାୟ ନମଃ
ଓଁ ବାଗ୍ମିନେ ନମଃ
୨୦. **ଓଁ ସୀତାଶୋକ ବିନାଶନାୟ ନମଃ**
ଓଁ ଶିବାୟ ନମଃ
ଓଁ ଶର୍ବାୟ ନମଃ
ଓଁ ପରାୟ ନମଃ
ଓଁ ଅବ୍ୟକ୍ତାୟ ନମଃ
ଓଁ ବ୍ୟକ୍ତବ୍ୟକ୍ତାୟ ନମଃ
ଓଁ ରସାଧରାୟ ନମଃ
ଓଁ ପିଙ୍ଗକେଶାୟ ନମଃ
ଓଁ ପିଙ୍ଗରୋମ୍ଣେ ନମଃ
ଓଁ ଶ୍ରୁତିଗମ୍ୟାୟ ନମଃ

୩୦ ଓଁ ସନାତନାୟ ନମଃ
ଓଁ ଅନାଦୟେ ନମଃ
ଓଁ ଭଗବତେ ନମଃ
ଓଁ ଦେବାୟ ନମଃ
ଓଁ ବିଶ୍ୱହେତବେ ନମଃ
ଓଁ ନିରାଶ୍ରୟାୟ ନମଃ
ଓଁ ଆରୋଗ୍ୟକର୍ତ୍ରେ ନମଃ
ଓଁ ବିଶ୍ୱେଶାୟ ନମଃ
ଓଁ ବିଶ୍ୱନାୟକାୟ ନମଃ
ଓଁ ହରୀଶ୍ୱରାୟ ନମଃ
୪୦ ଓଁ ଭର୍ଗାୟ ନମଃ
ଓଁ ରାମାୟ ନମଃ
ଓଁ ରାମଭକ୍ତାୟ ନମଃ
ଓଁ କଲ୍ୟାଣାୟ ନମଃ
ଓଁ ପ୍ରକୃତି ସ୍ଥିରାୟ ନମଃ
ଓଁ ବିଶ୍ୱମ୍ଭରାୟ ନମଃ
ଓଁ ବିଶ୍ୱମୂର୍ତ୍ତୟେ ନମଃ
ଓଁ ବିଶ୍ୱାକାରାୟ ନମଃ
ଓଁ ବିଶ୍ୱଦାୟ ନମଃ
ଓଁ ବିଶ୍ୱାତ୍ମନେ ନମଃ
୫୦ ଓଁ ବିଶ୍ୱସେବ୍ୟାୟ ନମଃ
ଓଁ ବିଶ୍ୱାୟ ନମଃ
ଓଁ ବିଶ୍ୱହରାୟ ନମଃ
ଓଁ ରବୟେ ନମଃ
ଓଁ ବିଶ୍ୱଚେଷ୍ଟାୟ ନମଃ
ଓଁ ବିଶ୍ୱଗମ୍ୟାୟ ନମଃ
ଓଁ ବିଶ୍ୱଧେୟାୟ ନମଃ
ଓଁ କଳାଧରାୟ ନମଃ
ଓଁ ପ୍ଲବଙ୍ଗମାୟ ନମଃ
ଓଁ କପିଶ୍ରେଷ୍ଠାୟ ନମଃ

୬୦ ଓଁ ଜ୍ୟୋଷ୍ଠାୟ ନମଃ
ଓଁ ବିଦ୍ୟାୟ ନମଃ
ଓଁ ବନେଚରାୟ ନମଃ
ଓଁ ବାଳାୟ ନମଃ
ଓଁ ବୃଦ୍ଧାୟ ନମଃ
ଓଁ ଯୂନେ ନମଃ
ଓଁ ତତ୍ତ୍ୱାୟ ନମଃ
ଓଁ ତତ୍ତ୍ୱଗମ୍ୟାୟ ନମଃ
ଓଁ ସଖ୍ୟେ ନମଃ
ଓଁ ଅଜାୟ ନମଃ
୭୦ ଓଁ ଅଞ୍ଜନୀ ସୂନବେ ନମଃ
ଓଁ ଅବ୍ୟଗ୍ରାୟ ନମଃ
ଓଁ ଗ୍ରାମସ୍ୱାନ୍ତାୟ ନମଃ
ଓଁ ଧରାଧରାୟ ନମଃ
ଓଁ ଭୂର୍ଲୋକାୟ ନମଃ
ଓଁ ଭୂବର୍ଲୋକାୟ ନମଃ
ଓଁ ସ୍ୱର୍ଲୋକାୟ ନମଃ
ଓଁ ମହର୍ଲୋକାୟ ନମଃ
ଓଁ ଜନଲୋକାୟ ନମଃ
ଓଁ ତପସେ ନମଃ
୮୦. ଓଁ ଅବ୍ୟୟାୟ ନମଃ
ଓଁ ସତ୍ୟାୟ ନମଃ
ଓଁ ଓଁକାରଗମ୍ୟାୟ ନମଃ
ଓଁ ପ୍ରଣବାୟ ନମଃ
ଓଁ ବ୍ୟାପକାୟ ନମଃ
ଓଁ ଅମଳାୟ ନମଃ
ଓଁ ଶିବାୟ ନମଃ
ଓଁ ଧର୍ମପ୍ରତିଷ୍ଠାତ୍ରେ ନମଃ
ଓଁ ରାମେଷ୍ଟାୟ ନମଃ
ଓଁ ଫାଲଗୁନପ୍ରିୟାୟ ନମଃ
୯୦ ଓଁ ଗୋଷ୍ପଦିନେ ନମଃ
ଓଁ କୃତବାରୀଶାୟ ନମଃ
ଓଁ ପୂର୍ଣ୍ଣକାମାୟ ନମଃ
ଓଁ ଧରାଧିପାୟ ନମଃ
ଓଁ ରକ୍ଷୋଘ୍ନାୟ ନମଃ
ଓଁ ପୁଣ୍ଡରୀକାକ୍ଷାୟ ନମଃ
ଓଁ ଶରଣାଗତ ବତ୍ସଳାୟ ନମଃ
ଓଁ ଜାନକୀ ପ୍ରାଣଦାତ୍ରେ ନମଃ
ଓଁ ରକ୍ଷଃ ପ୍ରାଣପହାରକାୟ ନମଃ
ଓଁ ପୂର୍ଣ୍ଣାୟ ନମଃ
୧୦୦ ଓଁ ସତ୍ୟାୟ ନମଃ
ଓଁ ପୀତବାସସେ ନମଃ
ଓଁ ଦିବାକରସମ ପ୍ରଭାୟ ନମଃ
ଓଁ ଦ୍ରୋଣହର୍ତ୍ତେ ନମଃ
ଓଁ ଶକ୍ତିନେତ୍ରେ ନମଃ
ଓଁ ଶକ୍ତୟେ ନମଃ
ଓଁ ରାକ୍ଷାସ ମାରକାୟ ନମଃ
ଓଁ ରକ୍ଷୋଘ୍ନାୟ ନମଃ
ଓଁ ରାମଦୂତାୟ ନମଃ
ଓଁ ଶାକିନୀ ଜୀବିକା ହରାୟ ନମଃ
୧୧୦ ଓଁ ଭୁଭୁକାର ହତାରାତୟେ ନମଃ
ଓଁ ଗର୍ବାୟ ନମଃ
ଓଁ ପର୍ବତ ଛେଦନାୟ ନମଃ
ଓଁ ହେତବେ ନମଃ
ଓଁ ଅହେତବେ ନମଃ
ଓଁ ପ୍ରାଂଶବେ ନମଃ
ଓଁ ବିଶ୍ୱଭର୍ତ୍ରେ ନମଃ
ଓଁ ଜଗଦ୍‌ଗୁରବେ ନମଃ
ଓଁ ଜଗନ୍ନେତ୍ରେ ନମଃ
ଓଁ ଜଗନ୍ନାଥାୟ ନମଃ

୧୨୦ ଓଁ ଜଗଦୀଶାୟ ନମଃ
ଓଁ ଜନେଶ୍ୱରାୟ ନମଃ
ଓଁ ଜଗଚ୍ଛିତାୟ ନମଃ
ଓଁ ହରୟେ ନମଃ
ଓଁ ଶ୍ରୀଶାୟ ନମଃ
ଓଁ ଗରଡ଼ସ୍ମୟଭଞ୍ଜକାୟ ନମଃ
ଓଁ ପାର୍ଥିଧ୍ୱଜାୟ ନମଃ
ଓଁ ବାୟୁପୁତ୍ରାୟ ନମଃ
ଓଁ ଅମିତପୁଚ୍ଛାୟ ନମଃ
ଓଁ ଅମିତପ୍ରଭାୟ ନମଃ
୧୩୦ ଓଁ ବ୍ରହ୍ମପୁଚ୍ଛାୟ ନମଃ
ଓଁ ପରବ୍ରହ୍ମଣେ ନମଃ
ଓଁ ପୁଚ୍ଛରୋମେଷ୍ଟାୟ ନମଃ
ଓଁ ସୁଗ୍ରୀବାଦିଯୁତାୟ ନମଃ
ଓଁ ଜ୍ଞାନିନେ ନମଃ
ଓଁ ବାନରାୟ ନମଃ
ଓଁ ବାନରେଶ୍ୱରାୟ ନମଃ
ଓଁ କଳ୍ପସ୍ଥାୟିନେ ନମଃ
ଓଁ ଚିରଂଜୀବିନେ ନମଃ
ଓଁ ପ୍ରସନ୍ନାୟ ନମଃ
୧୪୦ ଓଁ ସଦାଶିବାୟ ନମଃ
ଓଁ ସନ୍ନାତାୟ ନମଃ
ଓଁ ସଦ୍‌ଗତୟେ ନମଃ
ଓଁ ଯୁକ୍ତୟେ ନମଃ
ଓଁ ମୁକ୍ତିଦାୟ ନମଃ
ଓଁ କୀର୍ତ୍ତିନାୟକାୟ ନମଃ
ଓଁ କୀର୍ତ୍ତୟେ ନମଃ
ଓଁ କୀର୍ତ୍ତିପ୍ରଦାୟ ନମଃ
ଓଁ ସମୁଦ୍ରାୟ ନମଃ
ଓଁ ଶ୍ରୀପ୍ରଦାୟ ନମଃ

୧୫୦ ଓଁ ଶିବାୟ ନମଃ
ଓଁ ଉଦଧିକ୍ରମଣାୟ ନମଃ
ଓଁ ଦେବାୟ ନମଃ
ଓଁ ସଂସାର ଭୟନାଶନାୟ ନମଃ
ଓଁ ବାଳିବନ୍ଧକୃତେ ନମଃ
ଓଁ ବିଶ୍ୱଜେତ୍ରେ ନମଃ
ଓଁ ବିଶ୍ୱପ୍ରତିଷ୍ଠିତାୟ ନମଃ
ଓଁ ଲଙ୍କାରୟେ ନମଃ
ଓଁ କାଳପୁରୁଷାୟ ନମଃ
ଓଁ ଲଙ୍କେଶ ଗୃହଭଞ୍ଜନାୟ ନମଃ
୧୬୦ ଓଁ ଭୂତାବାସାୟ ନମଃ
ଓଁ ବାସୁଦେବାୟ ନମଃ
ଓଁ ବସବେ ନମଃ
ଓଁ ତ୍ରିଭୁବନେଶ୍ୱରାୟ ନମଃ
ଓଁ ଶ୍ରୀରାମରୂପାୟ ନମଃ
ଓଁ କୃଷ୍ଣାୟ ନମଃ
ଓଁ ଲଙ୍କାପ୍ରସାଦ ଭଞ୍ଜକାୟ ନମଃ
ଓଁ କୃଷ୍ଣାୟ ନମଃ
ଓଁ କୃଷ୍ଣସ୍ତୁତାୟ ନମଃ
ଓଁ ଶାନ୍ତାୟ ନମଃ
୧୭୦ ଓଁ ଶାନ୍ତିଦାୟ ନମଃ
ଓଁ ବିଶ୍ୱପାବନାୟ ନମଃ
ଓଁ ବିଶ୍ୱଭୋକ୍ତ୍ରେ ନମଃ
ଓଁ ମାରିଧ୍ନାୟ ନମଃ
ଓଁ ବ୍ରହ୍ମଚାରିଣେ ନମଃ
ଓଁ ଜିତେନ୍ଦ୍ରିୟାୟ ନମଃ
ଓଁ ଊର୍ଦ୍ଧଗାୟ ନମଃ
ଓଁ ଲାଙ୍ଗୁଲିନେ ନମଃ
ଓଁ ମାଳିନେ ନମଃ
ଓଁ ଲାଙ୍ଗୁଳାହତରାକ୍ଷସାୟ ନମଃ

୧୮୦ ଓଁ ସମୀର ତନୁଜାୟ ନମଃ
ଓଁ ବୀରାୟ ନମଃ
ଓଁ ବୀରମାରାୟ ନମଃ
ଓଁ ଜୟପ୍ରଦାୟ ନମଃ
ଓଁ ଜଗନ୍ମଙ୍ଗଳଦାୟ ନମଃ
ଓଁ ପୁଣ୍ୟାୟ ନମଃ
ଓଁ ପୁଣ୍ୟଶ୍ରବଣକୀର୍ତ୍ତନାୟ ନମଃ
ଓଁ ପୁଣ୍ୟକୀର୍ତ୍ତୟେ ନମଃ
ଓଁ ପୁଣ୍ୟଗୀତୟେ ନମଃ
ଓଁ ଜଗତ୍ପାବନ ପାବନାୟ ନମଃ
୧୯୦ ଓଁ ଦେବେଶାୟ ନମଃ
ଓଁ ମିତମାରାୟ ନମଃ
ଓଁ ରାମଭକ୍ତିବିଧାୟକାୟ ନମଃ
ଓଁ ଧାତ୍ରେ ନମଃ
ଓଁ ଧ୍ୟେୟାୟ ନମଃ
ଓଁ ଭଗାୟ ନମଃ
ଓଁ ସାକ୍ଷିଣେ ନମଃ
ଓଁ ଚେତ୍ରେ ନମଃ
ଓଁ ଚୈତନ୍ୟ ବିଗ୍ରହାୟ ନମଃ
ଓଁ ଜ୍ଞାନଦାୟ ନମଃ
୨୦୦ ଓଁ ପ୍ରାଣଦାୟ ନମଃ
ଓଁ ପ୍ରାଣାୟ ନମଃ
ଓଁ ଜଗତ୍ପ୍ରାଣାୟ ନମଃ
ଓଁ ସମୀରଣାୟ ନମଃ
ଓଁ ବିଭୀଷଣ ପ୍ରିୟାୟ ନମଃ
ଓଁ ଶୂରାୟ ନମଃ
ଓଁ ପିପ୍ପଳାଶ୍ରୟାୟ ନମଃ
ଓ ସିଦ୍ଧିଦାୟ ନମଃ
ଓଁ ସିଦ୍ଧାଶ୍ରୟାୟ ନମଃ
ଓଁ କାଳାୟ ନମଃ

୨୧୦ ଓଁ କାଳଭକ୍ଷକାୟ ନମଃ
ଓଁ ଭର୍ଜିତାୟ ନମଃ
ଓଁ ଲଙ୍କେଶ ନିଧନସ୍ଥାୟିନେ ନମଃ
ଓଁ ଲଙ୍କାବିଦାହକାୟ ନମଃ
ଓଁ ଈଶ୍ୱରାୟ ନମଃ
ଓଁ ଚନ୍ଦ୍ର ସୂର୍ଯ୍ୟାଗ୍ନି ନେତ୍ରାୟ ନମଃ
ଓଁ କାଳାଗ୍ନୟେ ନମଃ
ଓଁ ପ୍ରଳୟନ୍ତକାୟ ନମଃ
ଓଁ କପୀନାୟ ନମଃ
ଓଁ କପିଶାୟ ନମଃ
୨୨୦ ଓଁ ପୁଣ୍ୟରାଶୟେ ନମଃ
ଓଁ ଦ୍ୱାଦଶରାଶିଗାୟ ନମଃ
ଓଁ ସର୍ବାଶ୍ରୟାୟ ନମଃ
ଓଁ ଅପ୍ରମେୟାତ୍ମନେ ନମଃ
ଓଁ ରେବତ୍ୟାଦିନିବାରକାୟ ନମଃ
ଓଁ ଲକ୍ଷ୍ମଣ ପ୍ରାଣଦାତ୍ରେ ନମଃ
ଓଁ ସୀତାଜୀବନ ହେତୁକାୟ ନମଃ
ଓଁ ରାମଧ୍ୟେୟାୟ ନମଃ
ଓଁ ହୃଷୀକେଶାୟ ନମଃ
ଓଁ ବିଷ୍ଣୁଭକ୍ତାୟ ନମଃ
୨୩୦ ଓଁ ଜଟିନେ ନମଃ
ଓଁ ବଳିନେ ନମଃ
ଓଁ ସିଦ୍ଧାୟ ନମଃ
ଓଁ ଦେବାଦିଦର୍ପଘ୍ନେ ନମଃ
ଓଁ ହୋତ୍ରେ ନମଃ
ଓଁ ଧାତ୍ରେ ନମଃ
ଓଁ କର୍ତ୍ରେ ନମଃ
ଓଁ ଜଗତ୍ପ୍ରଭବେ ନମଃ
ଓଁ ନଗରଗ୍ରାମପାଳାୟ ନମଃ
ଓଁ ଶୁଦ୍ଧାୟ ନମଃ

୨୪୦ ଓଁ ବୁଦ୍ଧାୟ ନମଃ
ଓଁ ନିରନ୍ତନାୟ ନମଃ
ଓଁ ନିରଞ୍ଜନାୟ ନମଃ
ଓଁ ନିର୍ବିକଳ୍ପାୟ ନମଃ
ଓଁ ଗୁଣାତୀତାୟ ନମଃ
ଓଁ ଉଭୟଙ୍କରାୟ ନମଃ
ଓଁ ହନୁମତେ ନମଃ
ଓଁ ଦୂରାରାଧ୍ୟାୟ ନମଃ
ଓଁ ତପସ୍ ସାଧ୍ୟାୟ ନମଃ
ଓଁ ଅମରେଶ୍ୱରାୟ ନମଃ
୨୫୦ ଓଁ ଜାନକୀଘନଶୋକୋତ୍ଥତାପହର୍ତ୍ରେ ନମଃ
ଓଁ ପରାଶରାୟ ନମଃ
ଓଁ ବାଙ୍ମୟାୟ ନମଃ
ଓଁ ସଦ୍‌ସଦ୍ରୁପାୟ ନମଃ
ଓଁ କାରଣାୟ ନମଃ
ଓଁ ପ୍ରକୃତେପରାୟ ନମଃ
ଓଁ ଭାଗ୍ୟଦାୟ ନମଃ
ଓଁ ନିର୍ମଳାୟ ନମଃ
ଓଁ ନେତ୍ରେ ନମଃ
ଓଁ ପୁଚ୍ଛଲଙ୍କାବିଦାହକାୟ ନମଃ
୨୬୦ ଓଁ ପୁଚ୍ଛବଦ୍ଧାୟ ନମଃ
ଓଁ ଯାତୁଧାନାୟ ନମଃ
ଓଁ ଯାତୁଧାନରିପୁପ୍ରିୟାୟ ନମଃ
ଓଁ ଛାୟାପହାରିଣେ ନମଃ
ଓଁ ଭୁତେଶାୟ ନମଃ
ଓଁ ଲୋକେଶାୟ ନମଃ
ଓଁ ସଦ୍‌ଗତିପ୍ରଦାୟ ନମଃ
ଓଁ ପ୍ଲବଂଗେଶ୍ୱରାୟ ନମଃ
ଓଁ କ୍ରୋଧାୟ ନମଃ
ଓଁ କ୍ରୋଧସଂରକ୍ତ ଲୋଚନାୟ ନମଃ

୨୭୦ ଓଁ କ୍ରୋଧହର୍ତ୍ରେ ନମଃ
ଓଁ ତାପହର୍ତ୍ରେ ନମଃ
ଓଁ ଭକ୍ତଭୟାୟ ନମଃ
ଓଁ ବରପ୍ରଦାୟ ନମଃ
ଓଁ ଭକ୍ତାନୁ କମ୍ପିନେ ନମଃ
ଓଁ ବିଶ୍ୱେଶାୟ ନମଃ
ଓଁ ପୁରୁହୂତାୟ ନମଃ
ଓଁ ପୁରନ୍ଦରାୟ ନମଃ
ଓଁ ଅଗ୍ନୟେ ନମଃ
ଓଁ ବିଭାବସବେ ନମଃ
୨୮୦ ଓଁ ଭାସ୍ୱତେ ନମଃ
ଓଁ ଯମାୟ ନମଃ
ଓଁ ନିସେତୟେ ନମଃ
ଓଁ ବରୁଣାୟ ନମଃ
ଓଁ ବାୟୁଗତିମତେ ନମଃ
ଓଁ ବାୟବେ ନମଃ
ଓଁ କୁବେରାୟ ନମଃ
ଓଁ ଈଶ୍ୱରାୟ ନମଃ
ଓଁ ରବୟେ ନମଃ
ଓଁ ଚନ୍ଦ୍ରାୟ ନମଃ
୨୯୦ ଓଁ କୁଜାୟ ନମଃ
ଓଁ ସୌମ୍ୟାୟ ନମଃ
ଓଁ ଗୁରବେ ନମଃ
ଓଁ କାବ୍ୟାୟ ନମଃ
ଓଁ ଶନୈଶ୍ଚରାୟ ନମଃ
ଓଁ ରାହବେ ନମଃ
ଓଁ କେତବେ ନମଃ
ଓଁ ମରୁତେ ନମଃ
ଓଁ ହୋତ୍ରେ ନମଃ
ଓଁ ଧାତ୍ରେ ନମଃ

୩୦୦ ଓଁ ହର୍ତ୍ରେ ନମଃ
ଓଁ ସମୀରଜାୟ ନମଃ
ଓଁ ମଶକୀକୃତଦେବାରୟେ ନମଃ
ଓଁ ଦୈତ୍ୟାରୟେ ନମଃ
ଓଁ ମଧୁସୂଦନାୟ ନମଃ
ଓଁ କାମାୟ ନମଃ
ଓଁ କପୟେ ନମଃ
ଓଁ କାମପାଳାୟ ନମଃ
ଓଁ କପିଳାୟ ନମଃ
ଓଁ ବିଶ୍ୱଜୀବନାୟ ନମଃ
୩୧୦ ଓଁ ଭାଗୀରଥୀ ପଦାମ୍ଭୋଜାୟ ନମଃ
ଓଁ ସେତୁବନ୍ଧ ବିଶାରଦାୟ ନମଃ
ଓଁ ସ୍ୱହାକାରାୟ ନମଃ
ଓଁ ସ୍ୱଧାକାରାୟ ନମଃ
ଓଁ ହବିଷେ ନମଃ
ଓଁ କବ୍ୟାୟ ନମଃ
ଓଁ ହବ୍ୟାୟ ନମଃ
ଓଁ ପ୍ରକାଶକାୟ ନମଃ
ଓଁ ସ୍ୱପ୍ରକାଶାୟ ନମଃ
ଓଁ ମହାବୀରାୟ ନମଃ
୩୨୦ ଓଁ ଲଘବେ ନମଃ
ଓଁ ଅମିତବିକ୍ରମାୟ ନମଃ
ଓଁ ଭଣ୍ଡାନୋଡ୍‌ଡାନଗତିମତେ ନମଃ
ଓଁ ସଦ୍‌ଗତୟେ ନମଃ
ଓଁ ପୁରଷୋତ୍ତମାୟ ନମଃ
ଓଁ ଜଗଦାତ୍ମନେ ନମଃ
ଓଁ ଜଗଦ୍ୟୋନୟେ ନମଃ
ଓଁ ଜଗଦନ୍ତାୟ ନମଃ
ଓଁ ଅନନ୍ତକାୟ ନମଃ
ଓଁ ବିପାପ୍ମନେ ନମଃ

୩୩୦ ଓଁ ନିଷ୍କଳଙ୍କାୟ ନମଃ
ଓଁ ମହତେ ନମଃ
ଓଁ ମହଦହ କୃତୟେ ନମଃ
ଓଁ ଖାୟ ନମଃ
ଓଁ ବାୟବେ ନମଃ
ଓଁ ପୃଥିବ୍ୟୈ ନମଃ
ଓଁ ଆପାୟ ନମଃ
ଓଁ ବ୍ରହ୍ମୟେ ନମଃ
ଓଁ ଦିକ୍‌କଳାୟ ନମଃ
ଓଁ ଏକସ୍ଥାୟ ନମଃ
୩୪୦ ଓଁ କ୍ଷେତ୍ରଜ୍ଞାୟ ନମଃ
ଓଁ କ୍ଷେତ୍ରହନ୍ତେ ନମଃ
ଓଁ ପଲ୍ୱଲୀକୃତସାଗରାୟ ନମଃ
ଓଁ ହିରଣ୍ମୟାୟ ନମଃ
ଓଁ ପୁରାଣାୟ ନମଃ
ଓଁ ଖେଚରାୟ ନମଃ
ଓଁ ଭୂଚରାୟ ନମଃ
ଓଁ ମନସେ ନମଃ
ଓଁ ହିରଣ୍ୟଗର୍ଭାୟ ନମଃ
ଓଁ ସୁତ୍ରାତ୍ମେ ନମଃ
୩୫୦ ଓଁ ରାଜରାଜାୟ ନମଃ
ଓଁ ବିଶାମ୍ପତୟେ ନମଃ
ଓଁ ବେଦାନ୍ତ ବେଦ୍ୟାୟ ନମଃ
ଓଁ ଉଦ୍‌ଗୀଥାୟ ନମଃ
ଓଁ ବେଦାୟ ନମଃ
ଓଁ ବେଦାଙ୍ଗପାରଗାୟ ନମଃ
ଓଁ ପ୍ରତିଗ୍ରାମସ୍ଥିତୟେ ନମଃ
ଓଁ ସଦ୍ୟସ୍ଫୁର୍ତ୍ତିଦାତ୍ରେ ନମଃ
ଓଁ ଗୁଣାକାରାୟ ନମଃ
ଓଁ ନକ୍ଷତ୍ରମାଳିନେ ନମଃ

୩୬୦ ଓଁ ଭୂତାତ୍ମନେ ନମଃ
ଓଁ ସୁରଭୟେ ନମଃ
ଓଁ କଳ୍ପପାପାୟ ନମଃ
ଓଁ ଚିନ୍ତାମଣୟେ ନମଃ
ଓଁ ଗୁଣନିଧୟେ ନମଃ
ଓଁ ପ୍ରଜାଦ୍ୱାରାୟ ନମଃ
ଓଁ ଅନୁତ୍ତମାୟ ନମଃ
ଓଁ ପୁଣ୍ୟଶ୍ଳୋକାୟ ନମଃ
ଓଁ ପୁରାରାତୟେ ନମଃ
ଓଁ ଜ୍ୟୋତିଷ୍ମତେ ନମଃ
୩୭୦ ଓଁ ଶର୍ବରୀ ପତୟେ ନମଃ
ଓଁ କିଲ୍‌କିଲିରାବସନ୍ତସ୍ତ ଭୂତପ୍ରେତପିଶାଚକାୟ ନମଃ
ଓଁ ରଣତ୍ରୟହରାୟ ନମଃ
ଓଁ ସୂକ୍ଷ୍ମାୟ ନମଃ
ଓଁ ସ୍ଥୁଳାୟ ନମଃ
ଓଁ ସର୍ବଗତୟେ ନମଃ
ଓଁ ଫୁସେ ନମଃ
ଓଁ ଅପସ୍ମାହରାୟ ନମଃ
ଓଁ ସ୍ମର୍ତ୍ରେ ନମଃ
ଓଁ ଶ୍ରୁତୟେ ନମଃ
୩୮୦ ଓଁ ଗାଥାୟୈ ନମଃ
ଓଁ ସ୍ମୃତୟେ ନମଃ
ଓଁ ମନବେ ନମଃ
ଓଁ ସ୍ୱର୍ଗଦ୍ୱାରାୟ ନମଃ
ଓଁ ପ୍ରଜାଦ୍ୱାରାୟ ନମଃ
ଓଁ ମୋକ୍ଷଦ୍ୱାରାୟ ନମଃ
ଓଁ ଯତୀଶ୍ୱରାୟ ନମଃ
ଓଁ ନାଦରୂପାୟ ନମଃ
ଓଁ ପରବ୍ରହ୍ମଣେ ନମଃ
ଓଁ ବ୍ରହ୍ମଣେ ନମଃ

୩୯୦ ଓଁ ବ୍ରହ୍ମପୁରାତନାୟ ନମଃ
ଓଁ ଏକାୟ ନମଃ
ଓଁ ଅନେକାୟ ନମଃ
ଓଁ ଜନାୟ ନମଃ
ଓଁ ଶୁକ୍ଳାୟ ନମଃ
ଓଁ ସ୍ୱୟଂ ଜ୍ୟୋତିଷେ ନମଃ
ଓଁ ଅନକୁଳାୟ ନମଃ
ଓଁ ଜ୍ୟୋତିର୍ଜୋତିଷେ ନମଃ
ଓଁ ଅନାଦୟେ ନମଃ
ଓଁ ସାତ୍ତ୍ୱିକାୟ ନମଃ
୪୦୦ ଓଁ ରାଜସାୟ ନମଃ
ଓଁ ତମସେ ନମଃ
ଓଁ ତମୋ ହର୍ତ୍ରେ ନମଃ
ଓଁ ନିରାଲମ୍ବାୟ ନମଃ
ଓଁ ନିରାକାରାୟ ନମଃ
ଓଁ ଗୁଣାକରାୟ ନମଃ
ଓଁ ଗୁଣାଶ୍ରୟାୟ ନମଃ
ଓଁ ଗୁଣମୟାୟ ନମଃ
ଓଁ ବୃହତ୍ କାୟାୟ ନମଃ
ଓଁ ବୃହଦ୍ୟସେ ନମଃ
୪୧୦ ଓଁ ବୃହଦ୍ଧନୁଷେ ନମଃ
ଓଁ ବୃହତ୍ ପାଦାୟ ନମଃ
ଓଁ ବୃହନ୍ମୂର୍ଦ୍ଧ୍ନେ ନମଃ
ଓଁ ବୃହତ୍ ସ୍ୱନାୟ ନମଃ
ଓଁ ବୃହତ୍‌କାୟାୟ ନମଃ
ଓଁ ବୃହନ୍ ନାସାୟ ନମଃ
ଓଁ ବୃହଦ୍ ବାହବେ ନମଃ
ଓଁ ବୃହତ୍ତନବେ ନମଃ
ଓଁ ବୃହଦ୍ୟତ୍ନାୟ ନମଃ
ଓଁ ବୃହତ୍ କାର୍ଯ୍ୟାୟ ନମଃ

୪୨୦ ଓଁ ବୃହତ୍ ପୁଚ୍ଛାୟ ନମଃ
ଓଁ ବୃହତ୍ କରାୟ ନମଃ
ଓଁ ବୃହଦ୍ ଗତୟେ ନମଃ
ଓଁ ବୃହତ୍ ସେବ୍ୟାୟ ନମଃ
ଓଁ ବୃହଲ୍ଲୋକାୟ ନମଃ
ଓଁ ଫଳପ୍ରଦାୟ ନମଃ
ଓଁ ବୃହଚ୍ଛକ୍ତୟେ ନମଃ
ଓଁ ବୃହତ୍‌ବାଞ୍ଛାଫଳଦାୟ ନମଃ
ଓଁ ବୃହଦୀଶ୍ୱରାୟ ନମଃ
ଓଁ ବୃହଲ୍ଲୋକନୁତାୟ ନମଃ
୪୩୦ ଓଁ ଦ୍ରଷ୍ଟ୍ରେ ନମଃ
ଓଁ ବିଦ୍ୟୋଦ୍ ଗାତ୍ରେ ନମଃ
ଓଁ ଜଗଦ୍ ଗୁରୁବେ ନମଃ
ଓଁ ଦେବାଚାର୍ଯ୍ୟାୟ ନମଃ
ଓଁ ସତ୍ୟବାଦିନେ ନମଃ
ଓଁ ବ୍ରହ୍ମବାଦିନେ ନମଃ
ଓଁ କଳାଧରାୟ ନମଃ
ଓଁ ସପ୍ତପାତାଳ ଗାମିନେ ନମଃ
ଓଁ ମଳୟାଚଳସଂଶ୍ରୟାୟ ନମଃ
ଓଁ ଉତ୍ତରାଶାସ୍ଥିତାୟ ନମଃ
୪୪୦ ଓଁ ଶ୍ରୀଦାୟ ନମଃ
ଓଁ ଦିବ୍ୟୌଷଧୀବଶାୟ ନମଃ
ଓଁ ଖଗାୟ ନମଃ
ଓଁ ଶାଖାମୃଗାୟ ନମଃ
ଓଁ କପୀନ୍ଦ୍ରାୟ ନମଃ
ଓଁ ପୁରାଣାୟ ନମଃ
ଓଁ ପ୍ରାଣଚଞ୍ଚୁରାୟ ନମଃ
ଓଁ ଚତୁରାୟ ନମଃ
ଓଁ ବ୍ରାହ୍ମଣାୟ ନମଃ
ଓଁ ଯୋଗିନେ ନମଃ
୪୫୦ ଓଁ ଯୋଗଗମ୍ୟାୟ ନମଃ
ଓଁ ପରାବରାୟ ନମଃ
ଓଁ ଅନାଦୟେ ନମଃ
ଓଁ ନିଧନାୟ ନମଃ
ଓଁ ବ୍ୟାସାୟ ନମଃ
ଓଁ ବୈକୁଣ୍ଠାୟ ନମଃ
ଓଁ ପୃଥ୍ୱୀପତୟେ ନମଃ
ଓଁ ଅପରାଜିତୟେ ନମଃ
ଓଁ ଜିତାରାତୟେ ନମଃ
ଓଁ ସଦାନନ୍ଦଦାୟ ନମଃ
୪୬୦ ଓଁ ଈଶିତ୍ରେ ନମଃ
ଓଁ ଗୋପାଳାୟ ନମଃ
ଓଁ ଗୋପତୟେ ନମଃ
ଓଁ ଯୋଦ୍ଧ୍ରେ ନମଃ
ଓଁ ଜଳଦୋ ନମଃ
ଓଁ ଗୋଳାମ୍ବ ନମଃ
ଓଁ ପରାତ୍‌ପରାୟ ନମଃ
ଓଁ ମନୋବେଗିନେ ନମଃ
ଓଁ ସଦାଯୋଗିନେ ନମଃ
ଓଁ ସଂହାରଭୟନାଶନାୟ ନମଃ
୪୭୦ ଓଁ ତତ୍ତ୍ୱଦାତ୍ରେ ନମଃ
ଓଁ ସତ୍ତ୍ୱଜ୍ଞାୟ ନମଃ
ଓଁ ତତ୍ତ୍ୱାୟ ନମଃ
ଓଁ ତତ୍ତ୍ୱପ୍ରକାଶାୟ ନମଃ
ଓଁ ଶୁଦ୍ଧାୟ ନମଃ
ଓଁ ବୁଧାୟ ନମଃ
ଓଁ ନିତ୍ୟଯୁକ୍ତାୟ ନମଃ
ଓଁ ଭୁକ୍ତାକାରାୟ ନମଃ
ଓଁ ଜଗଦ୍ରଥାୟ ନମଃ
ଓଁ ପ୍ରଳୟାୟ ନମଃ

୪୮୦ ଓଁ ଅମିତ ମୟାୟ ନମଃ
ଓଁ ମାୟାତୀତାୟ ନମଃ
ଓଁ ବିମତ୍ସରାୟ ନମଃ
ଓଁ ମାୟାନିର୍ଜ୍ଜିତରକ୍ଷସେ ନମଃ
ଓଁ ମାୟାନିର୍ମିତବିଷ୍ଟପାୟ ନମଃ
ଓଁ ମାୟାଶ୍ରୟାୟ ନମଃ
ଓଁ ନିର୍ଲେପାୟ ନମଃ
ଓଁ ମାୟାନିବର୍ତ୍ତକାୟ ନମଃ
ଓଁ ସୁଖାୟ ନମଃ
ଓଁ ସୁଖାଃସୁଖ ପ୍ରଦାୟ ନମଃ
୪୯୦ ଓଁ ନାଗାୟ ନମଃ
ଓଁ ମହେଶକୃତ ସଂସ୍ତବାୟ ନମଃ
ଓଁ ମହେଶ୍ୱରାୟ ନମଃ
ଓଁ ସତ୍ସୟନ୍ଧାୟ ନମଃ
ଓଁ ଶରଭାୟ ନମଃ
ଓଁ କଳିପାବନାୟ ନମଃ
ଓଁ ରସାୟ ନମଃ
ଓଁ ରସଜ୍ଞାୟ ନମଃ
ଓଁ ସନ୍ମାନାୟ ନମଃ
ଓଁ ରୂପାୟ ନମଃ
୫୦୦ ଓଁ ଚକ୍ଷୁସେ ନମଃ
ଓଁ ସ୍ମୃତୟେ ନମଃ
ଓଁ ରବାୟ ନମଃ
ଓଁ ପ୍ରାଣାୟ ନମଃ
ଓଁ ଗନ୍ଧାୟ ନମଃ
ଓଁ ସ୍ପର୍ଶାୟ ନମଃ
ଓଁ ସ୍ପର୍ଶନାୟ ନମଃ
ଓଁ ଅହଂକାରମାନଗାୟ ନମଃ
ଓଁ ନେତିନେତୀ ନିଗମ୍ୟାୟ ନମଃ
ଓଁ ବୈକୁଣ୍ଠଭଜନପ୍ରିୟାୟ ନମଃ

୫୧୦ ଓଁ ଗିରିଶାୟ ନମଃ
ଓଁ ଗିରିଜାକାନ୍ତାୟ ନମଃ
ଓଁ ଦୁର୍ବାସସେ ନମଃ
ଓଁ କବୟେ ନମଃ
ଓଁ ଅଙ୍ଗିରସେ ନମଃ
ଓଁ ଭୃଗବେ ନମଃ
ଓଁ ବାସିଷ୍ଠାୟ ନମଃ
ଓଁ ଚ୍ୟବନାୟ ନମଃ
ଓଁ ନାରଦାୟ ନମଃ
ଓଁ ତୁମ୍ବରାୟ ନମଃ
୫୨୦ ଓଁ ଅମଳାୟ ନମଃ
ଓଁ ବିଶ୍ୱକ୍ଷେତ୍ରାୟ ନମଃ
ଓଁ ବିଶ୍ୱବୀଜାୟ ନମଃ
ଓଁ ବିଶ୍ୱନେତ୍ରାୟ ନମଃ
ଓଁ ବିଶ୍ୱପାୟ ନମଃ
ଓଁ ଯାଜକାୟ ନମଃ
ଓଁ ଯଜମାନାୟ ନମଃ
ଓଁ ପାବକାୟ ନମଃ
ଓଁ ପିତ୍ରେ ନମଃ
ଓଁ ଶ୍ରଦ୍ଧାୟ ନମଃ
୫୩୦ ଓଁ ବୁଦ୍ଧୈ ନମଃ
ଓଁ କ୍ଷମାୟୈ ନମଃ
ଓଁ ଚନ୍ଦ୍ରାୟୈ ନମଃ
ଓଁ ମନ୍ତ୍ରାୟ ନମଃ
ଓଁ ମନ୍ତ୍ରୟିତ୍ରେ ନମଃ
ଓଁ ସୁରାୟ ନମଃ
ଓଁ ରାଜେନ୍ଦ୍ରାୟ ନମଃ
ଓଁ ଭୂପତୟେ ନମଃ
ଓଁ ରୁଣ୍ଡମାଳିନେ ନମଃ
ଓଁ ସଂସାରସାରଥୟେ ନମଃ

୫୪୦ ଓଁ ନିତ୍ୟାୟ ନମଃ
ଓଁ ସଂପୂର୍ଣ୍ଣକାମାୟ ନମଃ
ଓଁ ଭକ୍ତକାମଦୁଘେ ନମଃ
ଓଁ ଉତ୍ତମାୟ ନମଃ
ଓଁ ଗଣପାୟ ନମଃ
ଓଁ କେଶବାୟ ନମଃ
ଓଁ ଭାତ୍ରେ ନମଃ
ଓଁ ପିତ୍ରେ ନମଃ
ଓଁ ମାତ୍ରେ ନମଃ
ଓଁ ମାରୁତୟେ ନମଃ
୫୫୦ ଓଁ ସହସ୍ରମୂର୍ଦ୍ଧ୍ନେ ନମଃ
ଓଁ ସହସ୍ରାସ୍ୟାୟ ନମଃ
ଓଁ ସହସ୍ରାକ୍ଷାୟ ନମଃ
ଓଁ ସହସ୍ରପାଦାୟ ନମଃ
ଓଁ କାମଜିତେ ନମଃ
ଓଁ କାମଦହନାୟ ନମଃ
ଓଁ କାମାୟ ନମଃ
ଓଁ କାମ୍ୟଫଳପ୍ରଦାୟ ନମଃ
ଓଁ ମୁଦ୍ରାପହାରିଣେ ନମଃ
ଓଁ ରକ୍ଷୋଧ୍ନାୟ ନମଃ
୫୬୦ ଓଁ କ୍ଷିତିଭାରହରାୟ ନମଃ
ଓଁ ଅକାଳାୟ ନମଃ
ଓଁ ନରବଂଷ୍ଟ୍ରାୟୁଧାୟ ନମଃ
ଓଁ ବିଷ୍ଣବେ ନମଃ
ଓଁ ଭକ୍ତାଭୟବରପ୍ରଦାୟ ନମଃ
ଓଁ ଦର୍ପଘ୍ନେ ନମଃ
ଓଁ ଦର୍ପଦାୟ ନମଃ
ଓଁ ଇଷ୍ଟାୟ ନମଃ
ଓଁ ଶତମୂର୍ତ୍ତୟେ ନମଃ
ଓଁ ଅମୂର୍ତ୍ତିମତେ ନମଃ

୫୭୦ ଓଁ ମହାନିଧୟେ ନମଃ
ଓଁ ମହାଭାଗାୟ ନମଃ
ଓଁ ମହାଗର୍ଭାୟ ନମଃ
ଓଁ ମହର୍ଦ୍ଧିଦାୟ ନମଃ
ଓଁ ମହାକାରାୟ ନମଃ
ଓଁ ମହାଯୋଗିନେ ନମଃ
ଓଁ ମହାତେଜତେ ନମଃ
ଓଁ ମହାଦ୍ୟୁତୟେ ନମଃ
ଓଁ ମହାକର୍ମଣେ ନମଃ
ଓଁ ମହାନାଦାୟ ନମଃ
୫୮୦ ଓଁ ମହାମନ୍ତ୍ରାୟ ନମଃ
ଓଁ ମହାମତୟେ ନମଃ
ଓଁ ମହାଶୟାୟ ନମଃ
ଓଁ ମହୋଦରାୟ ନମଃ
ଓଁ ମହାଦେବାତ୍ମକାୟ ନମଃ
ଓଁ ବିଭବେ ନମଃ
ଓଁ ରୁଦ୍ରକର୍ମଣେ ନମଃ
ଓଁ ଅକୃତକର୍ମଣେ ନମଃ
ଓଁ ରତ୍ନନାଭାୟ ନମଃ
ଓଁ କୃତାଗମାୟ ନମଃ
୫୯୦ ଓଁ ଅମ୍ଭୋନିଧି ଲିଙ୍ଗନାୟ ନମଃ
ଓଁ ସିଂହାୟ ନମଃ
ଓଁ ସତ୍ୟଧର୍ମାୟ ନମଃ
ଓଁ ପ୍ରମୋଦନାୟ ନମଃ
ଓଁ ଜିତମିତ୍ରାୟ ନମଃ
ଓଁ ଜୟାୟ ନମଃ
ଓଁ ସୋମାୟ ନମଃ
ଓଁ ବିଜୟାୟ ନମଃ
ଓଁ ବାୟୁବାହନାୟ ନମଃ
ଓଁ ଜୀବାୟ ନମଃ

୬୦୦ ଓଁ ଧାତ୍ରେ ନମଃ
ଓଁ ସହସ୍ରାଂଶବେ ନମଃ
ଓଁ କୁମୁନ୍ଦାୟ ନମଃ
ଓଁ ଭୂରିଦକ୍ଷିଣାୟ ନମଃ
ଓଁ ସିଦ୍ଧାର୍ଥାୟ ନମଃ
ଓଁ ସିଦ୍ଧିଦାୟ ନମଃ
ଓଁ ସିଦ୍ଧ ସଂକଳ୍ପାୟ ନମଃ
ଓଁ ସିଦ୍ଧି ହେତୁକାୟ ନମଃ
ଓଁ ସପ୍ତପାତାଳଚରଣାୟ ନମଃ
ଓଁ ସପ୍ତର୍ଷିଗଣବନ୍ଦିତାୟ ନମଃ
୬୧୦ ଓଁ ସପ୍ତାବ୍ଧିଲଙ୍ଘନାୟ ନମଃ
ଓଁ ବୀରାୟ ନମଃ
ଓଁ ସପ୍ତଦ୍ୱିପୋରୁ ମଣ୍ଡଳାୟ ନମଃ
ଓଁ ସପ୍ତାଙ୍ଗରାଜ୍ୟସୁଖଦାୟ ନମଃ
ଓଁ ସପ୍ତମାତୃନିବେଶିକାୟ ନମଃ
ଓଁ ସପ୍ତସ୍ୱର୍ଲୋକମୁକୁଟାୟ ନମଃ
ଓଁ ସପ୍ତହୋତ୍ରେ ନମଃ
ଓଁ ଖରାଶ୍ରୟାୟ ନମଃ
ଓଁ ସପ୍ତଚ୍ଛନ୍ଦାୟ ନମଃ
ଓଁ ନିଧୟେ ନମଃ
୬୨୦ ଓଁ ସପ୍ତଛନ୍ଦସେ ନମଃ
ଓଁ ସପ୍ତଜନାଶ୍ରୟାୟ ନମଃ
ଓଁ ସପ୍ତସାମାୟ ନମଃ
ଓଁ ଉପଗୀତାୟ ନମଃ
ଓଁ ସପ୍ତପାତାଳସଂଶ୍ରୟାୟ ନମଃ
ଓଁ ବଳଭୀମାୟ ନମଃ
ଓଁ ପାତାଳଦେବତାହନ୍ତ୍ରେ ନମଃ
ଓଁ ଶାସ୍ତ୍ରେ ନମଃ
ଓଁ ଚାତୁର୍ଯ୍ୟସାଗରାୟ ନମଃ
ଓଁ ଉଦ୍ୟଦକ୍ଷିଣଦୋର୍ଦଣ୍ଡାୟ ନମଃ
୬୩୦ ଓଁ ଚପଳାଙ୍ଗାୟ ନମଃ
ଓଁ ପ୍ରତୋଷକାୟ ନମଃ
ଓଁ ବୈଷ୍ଣବାୟ ନମଃ
ଓଁ ବିଶ୍ୱରୂପାତ୍ମନେ ନମଃ
ଓଁ ବନାରୟେ ନମଃ
ଓଁ କଜ୍ଜ୍ୱଭୁରୁହାୟ ନମଃ
ଓଁ ଲୋହିତାଙ୍ଗାୟ ନମଃ
ଓଁ ଗଦାପାଣୟେ ନମଃ
ଓଁ ଧୂର୍ତ୍ତାୟ ନମଃ
ଓଁ ସିନ୍ଦୁରଲେପନାୟ ନମଃ
୬୪୦ ଓଁ କୋଟିକନ୍ଦର୍ପସୌନ୍ଦର୍ଯ୍ୟାୟ ନମଃ
ଓଁ କପିବୃନ୍ଦପ୍ରପୂଜିତାୟ ନମଃ
ଓଁ ରୁଦ୍ରାବତାରାୟ ନମଃ
ଓଁ ଗମ୍ଭୀରାୟ ନମଃ
ଓଁ ଗମ୍ଭୀରଧ୍ୱାନିସମ୍ଭବାୟ ନମଃ
ଓଁ ସାମଗୈକଶିରୋରତ୍ନାୟ ନମଃ
ଓଁ ଗାନବିଦ୍ୟାପ୍ରକାଶକାୟ ନମଃ
ଓଁ ସ୍ୱର୍ଣ୍ଣଯଜ୍ଞୋପବୀତିନେ ନମଃ
ଓଁ କୁମାରାୟ ନମଃ
ଓଁ ବ୍ରହ୍ମଦୀକ୍ଷିତାୟ ନମଃ
୬୫୦ ଓଁ ଅଶ୍ରମାୟ ନମଃ
ଓଁ ପରମୋତ୍ସାହାୟ ନମଃ
ଓଁ ଐଶ୍ୱର୍ଯ୍ୟୌଦାର୍ଯ୍ୟସାଗରାୟ ନମଃ
ଓଁ ପଞ୍ଚାନନାୟ ନମଃ
ଓଁ ବିରାଡ଼ାତ୍ମନେ ନମଃ
ଓଁ ସ୍ୱରାଜେ ନମଃ
ଓଁ ଏକଦଶାନନାୟ ନମଃ
ଓଁ ବିଧିସ୍ତୁତାୟ ନମଃ
ଓଁ କୃପାମୂର୍ତ୍ତୟେ ନମଃ
ଓଁ ରାମହୃଦେ ନମଃ

୬୬୦ ଓଁ ଭକ୍ତବତ୍ସଳାୟ ନମଃ
ଓଁ ଅଦାହ୍ୟାୟ ନମଃ
ଓଁ ଅଚ୍ଛେଦ୍ୟାୟ ନମଃ
ଓଁ ଆଧାରାୟ ନମଃ
ଓଁ ବଜ୍ରାଙ୍ଗାୟ ନମଃ
ଓଁ ଭୂଜବିକ୍ରମାୟ ନମଃ
ଓଁ ଶ୍ରୀରାମହୃଦୟାନନ୍ଦାୟ ନମଃ
ଓଁ ଚିରାୟୁଷେ ନମଃ
ଓଁ ପୂର୍ଣ୍ଣପିଣ୍ଡକାୟ ନମଃ
ଓଁ ଧ୍ୟାନଶୀଳାୟ ନମଃ
୬୭୦ ଓଁ ପ୍ରଶାନ୍ତାତ୍ମନେ ନମଃ
ଓଁ ରାମନାମାମୃତାଶନାୟ ନମଃ
ଓଁ ମେଘରୂପାୟ ନମଃ
ଓଁ ମେଘବୃଷ୍ଟିନିବାରକାୟ ନମଃ
ଓଁ ମେଘଜୀବନହେତବେ ନମଃ
ଓଁ ମେଘଶ୍ୟାମାୟ ନମଃ
ଓଁ ପରାତ୍ମକାୟ ନମଃ
ଓଁ ସମୀରତନୟାୟ ନମଃ
ଓଁ ବୋଦ୍ଧ୍ରେ ନମଃ
ଓଁ ତତ୍ତ୍ୱବିଦ୍ୟାବିଶାରଦାୟ ନମଃ
୬୮୦ ଓଁ ଅମୋଘାୟ ନମଃ
ଓଁ ଅମେଘଦୃଷ୍ଟାୟ ନମଃ
ଓଁ ଦିଷ୍ଟଦାୟ ନମଃ
ଓଁ ଅନିଷ୍ଟନାଶାୟ ନମଃ
ଓଁ ଅର୍ଥାୟ ନମଃ
ଓଁ ଅନର୍ଥାପହାରିଣେ ନମଃ
ଓଁ ସମର୍ଥାୟ ନମଃ
ଓଁ ରାମସେବକାୟ ନମଃ
ଓଁ ଅର୍ଥିନେ ନମଃ
ଓଁ ଧନ୍ୟାୟ ନମଃ

୬୯୦ ଓଁ ସୁରାରାତୟେ ନମଃ
ଓଁ ପୁଣ୍ଡରୀକାକ୍ଷାୟ ନମଃ
ଓଁ ଆତ୍ମଭୁବେ ନମଃ
ଓଁ ସଂକର୍ଷଣାୟ ନମଃ
ଓଁ ବିଶୁଦ୍ଧାତ୍ମନେ ନମଃ
ଓଁ ବିଦ୍ୟାରାଶୟେ ନମଃ
ଓଁ ସୁରେଶ୍ୱରାୟ ନମଃ
ଓଁ ଅଚଲୋଦ୍ଧାରକାୟ ନମଃ
ଓଁ ନିତ୍ୟାୟ ନମଃ
ଓଁ ସେତୁକୃତେ ନମଃ
୭୦୦ ଓଁ ରାମସାରଥୟେ ନମଃ
ଓଁ ଆନନ୍ଦାୟ ନମଃ
ଓଁ ପରମାନନ୍ଦାୟ ନମଃ
ଓଁ ମତ୍ସ୍ୟାୟ ନମଃ
ଓଁ କୂର୍ମାୟ ନମଃ
ଓଁ ନିଧୟେ ନମଃ
ଓଁ ଶୂରାୟ ନମଃ
ଓଁ ବରାହାୟ ନମଃ
ଓଁ ନାରସିଂହାୟ ନମଃ
ଓଁ ବାମନାୟ ନମଃ
୭୧୦ ଓଁ ଜମଦଗ୍ନିଜାୟ ନମଃ
ଓଁ ରାମାୟ ନମଃ
ଓଁ କୃଷ୍ଣାୟ ନମଃ
ଓଁ ଶିବାୟ ନମଃ
ଓଁ ବୁଦ୍ଧାୟ ନମଃ
ଓଁ କଲ୍କିନେ ନମଃ
ଓଁ ରାମାଶ୍ରୟାୟ ନମଃ
ଓଁ ହରାୟ ନମଃ
ଓଁ ନନ୍ଦିନେ ନମଃ
ଓଁ ଶୃଙ୍ଗିଣେ ନମଃ

୭୨୦ ଓଁ ଚଣ୍ଡିନେ ନମଃ
ଓଁ ଗଣେଶାୟ ନମଃ
ଓଁ ଗଣସେବିତାୟ ନମଃ
ଓଁ କର୍ମାଧ୍ୟକ୍ଷାୟ ନମଃ
ଓଁ ସୁରାରାମାୟ ନମଃ
ଓଁ ବିଶ୍ରାମାୟ ନମଃ
ଓଁ ଜଗତୀପତୟେ ନମଃ
ଓଁ ଜଗନ୍ନାଥାୟ ନମଃ
ଓଁ କପୀଶାୟ ନମଃ
ଓଁ ସର୍ବବାସୟ ନମଃ
୭୩୦ ଓଁ ସଦାଶ୍ରୟାୟ ନମଃ
ଓଁ ସୁଗ୍ରୀବାଦିସ୍ତୁତାୟ ନମଃ
ଓଁ ଦାନ୍ତାୟ ନମଃ
ଓଁ ସର୍ବକର୍ମଣେ ନମଃ
ଓଁ ପ୍ଲବଙ୍ଗମାୟ ନମଃ
ଓଁ ନଖାଦାରିତରକ୍ଷସେ ନମଃ
ଓଁ ନଖଯୁଦ୍ଧବିଶାରଦାୟ ନମଃ
ଓଁ କୁଶଳାୟ ନମଃ
ଓଁ ସୁଧନାୟ ନମଃ
ଓଁ ଶେଷାୟ ନମଃ
୭୪୦ ଓଁ ବାସୁକୟେ ନମଃ
ଓଁ ତକ୍ଷକାୟ ନମଃ
ଓଁ ସୁବର୍ଣ୍ଣବର୍ଣ୍ଣାୟ ନମଃ
ଓଁ ବଳାଢ୍ୟାୟ ନମଃ
ଓଁ ପୁରଜେତ୍ରେ ନମଃ
ଓଁ ଅଘନାଶନାୟ ନମଃ
ଓଁ କୈବଲ୍ୟାୟ ନମଃ
ଓଁ କୈବଲ୍ୟଦୀପାୟ ନମଃ
ଓଁ ଗରୁଡ଼ାୟ ନମଃ
ଓଁ ପନ୍ନଗାୟ ନମଃ
୭୫୦ ଓଁ ଗୁରବେ ନମଃ
ଓଁ କ୍ଲି କ୍ଲି ରାବହତାରାତୟେ ନମଃ
ଓଁ ଗର୍ବାୟ ନମଃ
ଓଁ ପର୍ବତଭେଦନାୟ ନମଃ
ଓଁ ବଜ୍ରଙ୍ଗାୟ ନମଃ
ଓଁ ବଜ୍ର ବକ୍ତ୍ରାୟ ନମଃ
ଓଁ ଭକ୍ତାୟ ନମଃ
ଓଁ ଭକ୍ତବଜ୍ର ନିବାରଣାୟ ନମଃ
ଓଁ ନଖାୟୁଧାୟ ନମଃ
ଓଁ ମଣିଗ୍ରୀବାୟ ନମଃ
୭୬୦ ଓଁ ଜ୍ୱାଳିନେ ନମଃ
ଓଁ ମାଳିନେ ନମଃ
ଓଁ ଭାସ୍କରାୟ ନମଃ
ଓଁ ପ୍ରୌଢ଼ପ୍ରତାପାୟ ନମଃ
ଓଁ ସ୍ୱପନାୟ ନମଃ
ଓଁ ଭକ୍ତତାପନିବାରକାୟ ନମଃ
ଓଁ ଶରଣାୟ ନମଃ
ଓଁ ଜୀବାୟ ନମଃ
ଓଁ ଭୋକ୍ତ୍ରେ ନମଃ
ଓଁ ନାନାଚେଷ୍ଟୟ ନମଃ
୭୭୦ ଓଁ ଚଞ୍ଚଳାୟ ନମଃ
ଓଁ ସ୍ୱସ୍ଥାୟ ନମଃ
ଓଁ ଅସ୍ୱାସ୍ଥ୍ୟଘ୍ନେ ନମଃ
ଓଁ ଦୁଃଖଶାତନାୟ ନମଃ
ଓଁ ପବନାତ୍ମଜାୟ ନମଃ
ଓଁ ପାବନାୟ ନମଃ
ଓଁ ପବନାୟ ନମଃ
ଓଁ କାନ୍ତାୟ ନମଃ
ଓଁ ଭକ୍ତାଙ୍ଗାୟ ନମଃ
ଓଁ ମହନାୟ ନମଃ

୭୮୦ ଓଁ ବଳାୟ ନମଃ
ଓଁ ମେଘନାଦରିପବେ ନମଃ
ଓଁ ମେଘନାଦସଂହତରାକ୍ଷସାୟ ନମଃ
ଓଁ କ୍ଷରାୟ ନମଃ
ଓଁ ଅକ୍ଷରାୟ ନମଃ
ଓଁ ବିନୀତାତ୍ମନେ ନମଃ
ଓଁ ବାନରେଶାୟ ନମଃ
ଓଁ ସତାଙ୍ଗତୟେ ନମଃ
ଓଁ ଶ୍ରୀକଣ୍ଠାୟ ନମଃ
ଓଁ ଶିତିକଣ୍ଠାୟ ନମଃ
୭୯୦ ଓଁ ସହାୟାୟ ନମଃ
ଓଁ ଅସହନକାୟ ନମଃ
ଓଁ ଅସ୍ଥୁଳାୟ ନମଃ
ଓଁ ଅର୍ଣ୍ଣବେ ନମଃ
ଓଁ ଭର୍ଗାୟ ନମଃ
ଓଁ ଦେବାୟ ନମଃ
ଓଁ ସଂସ୍କୃତିନାଶାୟ ନମଃ
ଓଁ ଆଧାତ୍ମବିଦ୍ୟାୟ ନମଃ
ଓଁ ସାରାୟ ନମଃ
ଓଁ ଆଧାତ୍ମକୁଶଳାୟ ନମଃ
୮୦୦ ଓଁ ସୁଧିୟେ ନମଃ
ଓଁ ଅକଳ୍ମଶାୟ ନମଃ
ଓଁ ସତ୍ୟହେତବେ ନମଃ
ଓଁ ସତ୍ୟଦାୟ ନମଃ
ଓଁ ସତ୍ୟଗୋଚରାୟ ନମଃ
ଓଁ ସତ୍ୟଗର୍ଭାୟ ନମଃ
ଓଁ ସତ୍ୟରୂପାୟ ନମଃ
ଓଁ ସତ୍ୟାୟ ନମଃ
ଓଁ ସତ୍ୟପରାକ୍ରମାୟ ନମଃ
ଓଁ ଅଞ୍ଜନୀପ୍ରାଣଲିଙ୍ଗାୟ ନମଃ

୮୧୦ ଓଁ ବାୟୁବଂଶୋଦ୍‌ଭବାୟ ନମଃ
ଓଁ ଅଶ୍ରୁତୟେ ନମଃ
ଓଁ ଭଦ୍ରରୂପାୟ ନମଃ
ଓଁ ସୁରୂପାୟ ନମଃ
ଓଁ ଚିତ୍ରରୂପଧୃଷେ ନମଃ
ଓଁ ମୈନାକବନ୍ଦିତାୟ ନମଃ
ଓଁ ସୂକ୍ଷ୍ମଦର୍ଶନାୟ ନମଃ
ଓଁ ବିଜୟାୟ ନମଃ
ଓଁ ଜୟାୟ ନମଃ
ଓଁ କ୍ରାନ୍ତଦିଙ୍‌ମଣ୍ଡଳାୟ ନମଃ
୮୨୦ ଓଁ ରୁଦ୍ରାୟ ନମଃ
ଓଁ ପ୍ରକଟୀକୃତବିକ୍ରମାୟ ନମଃ
ଓଁ କମ୍ବୁକଣ୍ଠାୟ ନମଃ
ଓଁ ପ୍ରସନ୍ନାତ୍ମନେ ନମଃ
ଓଁ ହ୍ରସ୍ୱନାସାୟ ନମଃ
ଓଁ ବୃକୋଦରାୟ ନମଃ
ଓଁ ଲମ୍ବୋଷ୍ଠାୟ ନମଃ
ଓଁ କୁଣ୍ଡଳିନେ ନମଃ
ଓଁ ଓଁ ଚିତ୍ରମାଳିନେ ନମଃ
ଓଁ ଯୋଗବିଦାମ୍ବରାୟ ନମଃ
୮୩୦ ଓଁ ବିପଶ୍ଚିତେ ନମଃ
ଓଁ କବୟେ ନମଃ
ଓଁ ଆନନ୍ଦବିଗ୍ରହାୟ ନମଃ
ଓଁ ଅନନ୍ୟଶାସନାୟ ନମଃ
ଓଁ ଫାଲ୍‌ଗୁନୀସୂନବେ ନମଃ
ଓଁ ଅବ୍ୟଗ୍ରାୟ ନମଃ
ଓଁ ଯୋଗାତ୍ମନେ ନମଃ
ଓଁ ଯୋଗତତ୍ପରାୟ ନମଃ
ଓଁ ଯୋଗବିଦେ ନମଃ
ଓଁ ଯୋଗକର୍ତ୍ତେ ନମଃ

୮୪୦ ଓଁ ଯୋଗଯୋନୟେ ନମଃ
ଓଁ ଦିଗମ୍ବରାୟ ନମଃ
ଓଁ ଅକାରାଦିହକାରାନ୍ତାୟ ନମଃ
ଓଁ ବର୍ଣ୍ଣନିର୍ମିତାୟ ନମଃ
ଓଁ ବିଗ୍ରହାୟ ନମଃ
ଓଁ ଉଲ୍ଲୁଖଳମୁଖାୟ ନମଃ
ଓଁ ସିଦ୍ଧାୟ ନମଃ
ଓଁ ସଂସ୍ତୁତାୟ ନମଃ
ଓଁ ପ୍ରଥମେଶ୍ୱରାୟ ନମଃ
ଓଁ ଶିଷ୍ଟଜଙ୍ଘାୟ ନମଃ
୮୫୦ ଓଁ ଶ୍ଲିଷ୍ଟପାଣୟେ ନମଃ
ଓଁ ଶ୍ଲିଷ୍ଟଜାନବେ ନମଃ
ଓଁ ଶିଖାଧରାୟ ନମଃ
ଓଁ ସୁଶର୍ମଣେ ନମଃ
ଓଁ ଅମିତଶର୍ମିଣେ ନମଃ
ଓଁ ନାରାୟଣପରାୟଣାୟ ନମଃ
ଓଁ ଜିଷ୍ଣବେ ନମଃ
ଓଁ ଭବିଷ୍ଣବେ ନମଃ
ଓଁ ରୋଚିଷ୍ଣବେ ନମଃ
ଓଁ ଗ୍ରସିଷ୍ଣବେ ନମଃ
୮୬୦ ଓଁ ସ୍ଥାସ୍ନବେ ନମଃ
ଓଁ ହରୟେ ନମଃ
ଓଁ ରୁଦ୍ରାନୁକୃତେ ନମଃ
ଓଁ ବୃକ୍ଷକମ୍ପନାୟ ନମଃ
ଓଁ ଭୂମିକମ୍ପନାୟ ନମଃ
ଓଁ ଗୁଣପ୍ରବାହାୟ ନମଃ
ଓଁ ସୂତ୍ରାତ୍ମନେ ନମଃ
ଓଁ ବୀତରାଗାୟ ନମଃ
ଓଁ ସ୍ତୁତିପ୍ରିୟାୟ ନମଃ
ଓଁ ନାଗକନ୍ୟାଭୟଧ୍ୱଂସିନେ ନମଃ
୮୭୦ ଓଁ ଋତୁପର୍ଣ୍ଣାୟ ନମଃ
ଓଁ କପାଳଭୃତେ ନମଃ
ଓଁ ଅନାକୁଳାୟ ନମଃ
ଓଁ ଭଗାୟ ନମଃ
ଓଁ ଅପାୟାୟ ନମଃ
ଓଁ ଅନପାୟାୟ ନମଃ
ଓଁ ବେଦପାରଗାୟ ନମଃ
ଓଁ ଅକ୍ଷରାୟ ନମଃ
ଓଁ ପୁରୁଷାୟ ନମଃ
ଓଁ ଲୋକନାଥାୟ ନମଃ
୮୮୦ ଓଁ ଋକ୍ଷପ୍ରଭବେ ନମଃ
ଓଁ ଦୃଢ଼ାୟ ନମଃ
ଓଁ ଅଷ୍ଟାଙ୍ଗଯୋଗାୟ ନମଃ
ଓଁ ଫଳଭୁବେ ନମଃ
ଓଁ ସତ୍ୟସନ୍ଧାୟ ନମଃ
ଓଁ ପୁରୁଷ୍ଟୁତାୟ ନମଃ
ଓଁ ଶ୍ମଶାନସ୍ଥାନନିଳୟାୟ ନମଃ
ଓଁ ପ୍ରେତବିଦ୍ରାବଣାୟ ନମଃ
ଓଁ ଶ୍ରମାୟ ନମଃ
ଓଁ ପଞ୍ଚାକ୍ଷରପରାୟ ନମଃ
୮୯୦ ଓଁ ପଞ୍ଚମାତୃକାୟ ନମଃ
ଓଁ ରଞ୍ଜନାୟ ନମଃ
ଓଁ ଧ୍ୱଜାୟ ନମଃ
ଓଁ ଯୋଗିନେ ନମଃ
ଓଁ ବୃନ୍ଦବନ୍ଦ୍ୟାୟ ନମଃ
ଓଁ ଶ୍ରିୟାୟ ନମଃ
ଓଁ ଶତ୍ରୁଘ୍ନାୟ ନମଃ
ଓଁ ଅନନ୍ତବିକ୍ରମାୟ ନମଃ
ଓଁ ବ୍ରହ୍ମଚାରୀଣେ ନମଃ
ଓଁ ଇନ୍ଦ୍ରିୟରିପବେ ନମଃ

୯୦୦ ଓଁ ଧୃତଦଣ୍ଡାୟ ନମଃ
ଓଁ ଦଶାତ୍ମକାୟ ନମଃ
ଓଁ ଅପ୍ରପଞ୍ଚାୟ ନମଃ
ଓଁ ସଦାକାରାୟ ନମଃ
ଓଁ ଶୂରସେନାବିଦାରକାୟ ନମଃ
ଓଁ ବୃଦ୍ଧାୟ ନମଃ
ଓଁ ପ୍ରମୋଦାୟ ନମଃ
ଓଁ ଆନନ୍ଦାୟ ନମଃ
ଓଁ ସପ୍ତଜିହ୍ୱପତୟେ ନମଃ
ଓଁ ଧରାୟ ନମଃ
୯୧୦ ଓଁ ନବଦ୍ୱାରପୂରାଧାରାୟ ନମଃ
ଓଁ ପ୍ରତ୍ୟଗ୍ରାୟ ନମଃ
ଓଁ ସାମଗାୟକାୟ ନମଃ
ଓଁ ଷଟ୍‌ଚକ୍ରଧାମ୍ନେ ନମଃ
ଓଁ ସ୍ୱର୍ଲୋକାୟ ନମଃ
ଓଁ ଭୟହୃତେ ନମଃ
ଓଁ ନାମଦାୟ ନମଃ
ଓଁ ଅମଦାୟ ନମଃ
ଓଁ ସର୍ବବଶ୍ୟକରାୟ ନମଃ
ଓଁ ଶକ୍ତୟେ ନମଃ
୯୨୦ ଓଁ ଅନନ୍ତାୟ ନମଃ
ଓଁ ଅନନ୍ତମଙ୍ଗଳାୟ ନମଃ
ଓଁ ଅଷ୍ଟମୂର୍ତ୍ତିଧରାୟ ନମଃ
ଓଁ ନେତ୍ରେ ନମଃ
ଓଁ ବିରୂପାୟ ନମଃ
ଓଁ ସ୍ୱରସୁନ୍ଦରାୟ ନମଃ
ଓଁ ଧୂମ୍ରକେତବେ ନମଃ
ଓଁ ମହାକେତବେ ନମଃ
ଓଁ ସତ୍ୟକେତବେ ନମଃ
ଓଁ ମହାରଥାୟ ନମଃ

୯୩୦ ଓଁ ନନ୍ଦୀପ୍ରିୟାୟ ନମଃ
ଓଁ ସ୍ୱତନ୍ତ୍ରାୟ ନମଃ
ଓଁ ମେଖଳିନେ ନମଃ
ଓଁ ଡମରୁପ୍ରିୟାୟ ନମଃ
ଓଁ ଲୋହାଙ୍ଗାୟ ନମଃ
ଓଁ ସର୍ବବିଦେ ନମଃ
ଓଁ ଧ୍ୱନିନେ ନମଃ
ଓଁ ଶୃଙ୍ଗଦାୟ ନମଃ
ଓଁ ଶର୍ବାୟ ନମଃ
ଓଁ ଈଶ୍ୱରାୟ ନମଃ
୯୪୦ ଓଁ ଫଳଭୂଜେ ନମଃ
ଓଁ ଫଳହସ୍ତାୟ ନମଃ
ଓଁ ସର୍ବକର୍ମଫଳପ୍ରଦାୟ ନମଃ
ଓଁ ଧର୍ମାଧକ୍ଷାୟ ନମଃ
ଓଁ ଧର୍ମଫଳାୟ ନମଃ
ଓଁ ଧର୍ମାୟ ନମଃ
ଓଁ ଧର୍ମପ୍ରଦାୟ ନମଃ
ଓଁ ଅର୍ଥଦାୟ ନମଃ
ଓଁ ପଞ୍ଚବିଂଶତିତତ୍ତ୍ୱଜ୍ଞାୟ ନମଃ
ଓଁ ତାରକବ୍ରହ୍ମତତ୍‌ପତୟେ ନମଃ
୯୫୦ ଓଁ ତ୍ରିମାର୍ଗବସତିନେ ନମଃ
ଓଁ ଭୀମାୟ ନମଃ
ଓଁ ସର୍ବଦୁଷ୍ଟନିବର୍ହଣାୟ ନମଃ
ଓଁ ଉର୍ଜସ୍ୱତେ ନମଃ
ଓଁ ନିଷ୍କଳାୟ ନମଃ
ଓଁ ଶୂଳିନେ ନମଃ
ଓଁ ମାଳିନେ ନମଃ
ଓଁ ଗର୍ଜାୟ ନମଃ
ଓଁ ନିଶାଚରାୟ ନମଃ
ଓଁ ରକ୍ତାମ୍ବରଧରାୟ ନମଃ

୯୬୦ ଓଁ ରକ୍ତାୟ ନମଃ
ଓଁ ରକ୍ତମାଳାବିଭୂଷଣାୟ ନମଃ
ଓଁ ବନମାଳିନେ ନମଃ
ଓଁ ଶୁଭାଙ୍ଗାୟ ନମଃ
ଓଁ ଶ୍ୱେତାୟ ନମଃ
ଓଁ ଶ୍ୱେତାମ୍ବରାୟ ନମଃ
ଓଁ ଯୂନେ ନମଃ
ଓଁ ଜୟାୟ ନମଃ
ଓଁ ଅଜେୟାୟ ନମଃ
ଓଁ ପରୀବାଦାୟ ନମଃ
୯୭୦ ଓଁ ସହସ୍ରବଦନାୟ ନମଃ
ଓଁ କବୟେ ନମଃ
ଓଁ ଶାକିନୀ-ଡାକିନୀ-ଯକ୍ଷ
ଓଁ ରକ୍ଷୋଭୂତପ୍ରଭଞ୍ଜକାୟ ନମଃ
ଓଁ ସଦ୍ୟୋଜାତାୟ ନମଃ
ଓଁ କାୟଗତୟେ ନମଃ
ଓଁ ଜ୍ଞାନମୂର୍ତ୍ତୟେ ନମଃ
ଓଁ ଯସସ୍କରାୟ ନମଃ
ଓଁ ଶମ୍ଭୁତେଜସେ ନମଃ
ଓଁ ସାର୍ବଭୌମାୟ ନମଃ
ଓଁ ବିଷ୍ଣୁଭକ୍ତାୟ ନମଃ
୯୮୦ ଓଁ ପ୍ଲବଙ୍ଗମାୟ ନମଃ
ଓଁ ଚତୁର୍ନବତିମନ୍ତ୍ରଜ୍ଞାୟ ନମଃ
ଓଁ ପୌଲସ୍ତ୍ୟବଳଦର୍ପଘ୍ନେ ନମଃ
ଓଁ ସର୍ବଲକ୍ଷ୍ମୀପ୍ରଦାୟ ନମଃ
ଓଁ ଶ୍ରୀମତେ ନମଃ
ଓଁ ଅଙ୍ଗଦପ୍ରିୟାୟ ନମଃ
ଓଁ ଇତିନୁଦେ ନମଃ
ଓଁ ସ୍ମୃତୟେ ନମଃ
ଓଁ ବୀଜାୟ ନମଃ
ଓଁ ସୁରେଶାୟ ନମଃ
୯୯୦ ଓଁ ସଂସାରଭୟନାଶନାୟ ନମଃ
ଓଁ ଉତ୍ତମାୟ ନମଃ
ଓଁ ଶ୍ରୀପରିବାରାୟ ନମଃ
ଓଁ ଶ୍ରୀଭୁବେ ନମଃ
ଓଁ ଉଗ୍ରାୟ ନମଃ
ଓଁ କାମଦୁଘେ ନମଃ
ଓଁ ତାରକାୟ ନମଃ
ଓଁ ଭଗବତେ ନମଃ
ଓଁ ତ୍ରାତ୍ରେ ନମଃ
ଓଁ ସ୍ୱସ୍ତିଦାତ୍ରେ ନମଃ
୧୦୦୦ ଓଁ ସୁମଙ୍ଗଳାୟ ନମଃ



*ବି.ଦ୍ର. - ୧୦୦୮ ଫୁଲରୁ ବଳିଥିବା ୮ ଗୋଟି ଫୁଲ "ଓଁ ହନୁମତେ ନମଃ" ମନ୍ତ୍ର ପଢ଼ି ପ୍ରଭୁଙ୍କୁ ସମର୍ପଣ କରିବ।*

## ରଘୁପତି ଆଶ୍ରମର କେତୋଟି ଜ୍ଞାତବ୍ୟ ବିଷୟ

| | | |
|---|---|---|
| ରଘୁପତି ଆଶ୍ରମ ମନ୍ଦିର ପ୍ରତିଷ୍ଠାତା | : | ମହାତ୍ମା ରାଜନ୍ (ରାଜକିଶୋର ଚମ୍ପତିରାୟ, ହଜ) |
| ଜୀଉମାନଙ୍କର ଓ ମନ୍ଦିରର ସମସ୍ତ ମୂର୍ତ୍ତି ଗୁଡ଼ିକର ଗଠନ | : | ✓ କୃଷ୍ଣ ମହାରଣା, ହଜ |
| ମନ୍ଦିର ଗଠନ | : | ✓ ହରି ମହାରଣା ହଜ |
| ପତିତପାବନ ମୂର୍ତ୍ତି | | ଗଜପତି ଶ୍ରୀ ଦିବ୍ୟସିଂହଦେବଙ୍କ ପ୍ରଦତ୍ତ (ଭାଗବତ ଆଶ୍ରମ ବାବା ଶ୍ରୀ ଚୈତନ୍ୟ ଚରଣ ଦାସ ମହାରାଜଙ୍କ ଜରିଆରେ) |
| ରଘୁପତିଙ୍କ ପାଦତଳସ୍ଥିତ ପ୍ରସ୍ତର ନିର୍ମିତ ଭକ୍ତବୀର ଶ୍ରୀ ହନୁମାନ ମୂର୍ତ୍ତି | : | ବିଶ୍ୱପ୍ରସିଦ୍ଧ ପ୍ରସ୍ତର ଶିଳ୍ପୀ ପଦ୍ମଶ୍ରୀ ଶ୍ରୀ ସୁଦର୍ଶନ ସାହୁ, ପୁରୀ |
| ମନ୍ଦିର ମହାବୀରଙ୍କ ଉତ୍ତରପଟେ ଥିବା ଭକ୍ତରାଜ ଗରୁଡ଼ ମହାରାଜଙ୍କ ପ୍ରସ୍ତର ମୂର୍ତ୍ତି | : | ଶ୍ରୀ ରାହାସ ପାତାଳସିଂହ, ଗ୍ରା - ଭୋଗପୁର, ଖୋର୍ଦ୍ଧା |
| ଦାରୁନିର୍ମିତ କ୍ଷୁଦ୍ର ଜଗନ୍ନାଥ ବଳଭଦ୍ର ସୁଭଦ୍ରା ମୂର୍ତ୍ତି ତ୍ରୟୀ - | : | ବସନ୍ତ ଦାସଙ୍କ ପ୍ରଦତ୍ତ, ଅଚ୍ୟୁତପୁର |
| ଜାନକୀ ମାତା ସୀତାଙ୍କ ପାଦତଳେ ସ୍ଥାପିତ ପିତଳର ମହାବୀର ମୂର୍ତ୍ତି | : | ଶ୍ରୀ ଦେବଦତ୍ତ ଚମ୍ପତିରାୟ, ହଜ |

# ସ୍ତମ୍ଭକାରଙ୍କ ସବିନୟ ସ୍ୱୀକୃତି

ସମସ୍ତେ ଜାଣନ୍ତି ଶ୍ରୀ ହନୁମାନ୍‌ଜୀ ମର୍କଟ ବା ବାନର ବର୍ଗର ଅଟନ୍ତି । ସାଧାରଣତଃ ମାଙ୍କଡ଼ମାନେ ଏ ଗଛରୁ ସେ ଗଛକୁ ବା ଏଠାରୁ ସେଠାକୁ ସ୍ୱାଭାବିକ ଭାବରେ ଡ଼େଇଁ ବୁଲୁଥାନ୍ତି । ନିରତ ଚଞ୍ଚଳ, ନିର୍ଦ୍ଦିଷ୍ଟ ବାସହୀନ, ଅସ୍ଥିର । ସତେ ଯେମିତି ଏକ ବାରବୁଲା ପ୍ରାଣୀ ବା ଜୀବ । ଇନ୍ଦ୍ରିୟ ପରାୟଣ, ବିବେକ ବିଚାରହୀନ ଅତି କାମାସକ୍ତ । ଏହିଭଳି ଏକ ଶ୍ରେଣୀ  ବା ବର୍ଗରୁ ନିଜକୁ ଉଠାଇ ବା ଉନ୍ନୀତ କରି ହନୁମାନଜୀ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମଙ୍କର ଶ୍ରେଷ୍ଠ ଭକ୍ତ ହୋଇ ପାରିଥିଲେ । ପ୍ରଭୁଙ୍କର ସୁଖ ସନ୍ତୋଷ ଓ ମଙ୍ଗଳ ପାଇଁ ହନୁମାନଜୀଙ୍କର ଜୀବନ ସତେ ଯେପରି ଉତ୍ସର୍ଗୀକୃତ ଥିଲା । ଶ୍ରୀରାମ ସଦାବେଳେ  ହନୁମାନଙ୍କ ନିକଟରେ ଅଶେଷ ଋଣୀ ପରି ମନେ କରୁଥିଲେ । କହୁ କହୁ ଥରେ ସେ  କହିପକାଇଥିଲେ - "ହନୁମାନ ତମ ଋଣ ମୁଁ ଜୀବନରେ କେବେ ଶୁଝି ପାରିବି ନାହିଁ ।"

କହିଲେ ଶ୍ରୀରାମ, ତୋହ ସମ ହିତକାରୀ,
କେହି ନାହିଁ ସୁର ନର ମୁନି ତନୁଧାରୀ ॥
କେଉଁ ପ୍ରତି ଉପକାର କରିବି ମୁଁ ତୋର,
ପାରୁନି ତୋ' ଆଗେ କରି ସ୍ଥିର ମନ ମୋର ॥  (୧୫୫ ସୁନ୍ଦର କାଣ୍ଡ)

"ଦେଖିଲି ବିଚାର କରି ମନରେ ବହୁତ,
ହୋଇ ନପାରିବି ପୁତ୍ର ତୋର ଗୁଣମୁକ୍ତ ॥"  ରାମଚରିତ ମାନସ (ସତ୍ୟାନନ୍ଦ)

ପ୍ରାଚୀନ ଭାରତର ଋଷି ମହର୍ଷିଗଣ ଅତି ଉଚ୍ଚକୋଟିର ଜ୍ଞାନୀ, ଭକ୍ତ ଏବଂ ପରୋପକାରୀ ସନ୍ଥ ଥିଲେ । ସେମାନେ ଲୋକକଲ୍ୟାଣ ପାଇଁ ନିଜ ନିଜର ଭଗବଦ୍ ଜ୍ଞାନକୁ ମୁକ୍ତ ହୃଦୟରେ ପ୍ରଚାର ପ୍ରସାର କରି ଯାଇଛନ୍ତି । ଜଗତର ଆତ୍ମା ତ ଏକ । ତଥାପି ରାମ କୃଷ୍ଣ ଶିବ ଶକ୍ତି ସୂର୍ଯ୍ୟ, ଗଣେଶ, ବାମନ ନୃସିଂହ ମୀନ କୂର୍ମ ବରାହାଦି ଅବତାର ରୂପରେ ବା ନାମରେ  ବହୁ ଉପାସନା ଓ ଆଧାତ୍ମ୍ୟ ଗ୍ରନ୍ଥ ରଚନା କରି ଭିନ୍ନ ରୁଚି ଅନୁସାରେ ପରମାତ୍ମା ପ୍ରାପ୍ତି ଦିଗରେ ଜନ ସାଧାରଣଙ୍କୁ ପ୍ରେରିତ କରି ଯାଇଛନ୍ତି । ସତେ ଯେମିତି

'ଅର', ପ୍ରତି କେନ୍ଦ୍ର ବା ନାଭିକୁ ପରିଧି ସହିତ ସଂଯୁକ୍ତ କରୁଥିବା ଏକାଧିକ କାଷ୍ଠଖଣ୍ଡି ପରି। ସାଧାରଣ ଗାଉଁଲୀ ଭାଷାରେ କହିବାକୁ ଗଲେ 'ପଇ'କୁ ଶଗଡ଼ର ତୁମ୍ବ ସହିତ ସତେ ଯେମିତି 'ଅର' ସାହାଯ୍ୟରେ ଯୋଡ଼ିଦିଆ ଯାଇଅଛି। ସେହିପରି ଶିବାବତାର ରାମଭକ୍ତ ହନୁମାନଙ୍କ ଉପରେ ମଧ ବହୁ ବିଶେଷାଙ୍କ ପ୍ରକାଶ ପାଇଅଛି।

ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମ ଅନନ୍ତ ଓ ତାଙ୍କର କଥା ବା ଗାଥା ମଧ ଅନନ୍ତ।

"ଅନନ୍ତ ଶ୍ରୀ ରାମଚନ୍ଦ୍ର ଗୁଣ ବି ଅନନ୍ତ
କଥାର ବିସ୍ତାର କେତେ କଳିବ କେମନ୍ତ ?" ରା.ଚ.ମା- ୧ମ ଭାଗ, ପୃଷ୍ଠା ୩୯

ଆକାଶର ତାରା ବା ବରଷାର ଧାରାକୁ କିଏ ବା କେମିତି କଳନା କରି ପାରିବ ? ସେହିପରି ଶ୍ରୀରାମଙ୍କ ସେବକଭକ୍ତ ଶ୍ରୀ ହନୁମାନଜୀ କଥା ଗାଥା ଗୁଣ ଓ ଗାରିମାର ଏକ ପ୍ରକାଣ୍ଡ ଗନ୍ତାଘର। ସେ ନିଜେ ସଦ୍‌ଗୁଣର ସଦନ । ଅକଳନୀୟ ଓ ଅବର୍ଣ୍ଣନୀୟ। ଅଧାର ସିନ୍ଧୁର ଏକ ବିନ୍ଦୁ ଜଳ ପରି ସେହି ରାମପ୍ରେମୀ ହନୁମାନଙ୍କର ଏକ ଛୋଟ ସଂକଳନ "ଜୟ ଜୟ ଜୟ ହନୁମାନ ଗୋସାଇଁ"କୁ ଆମର ଲୋକଲୋଚନକୁ ଆଣି ନିଜକୁ ଅତ୍ୟନ୍ତ ସୌଭାଗ୍ୟଶାଳୀ ମନେ କରୁଅଛୁ।

## ଜନଦେବତା ଶ୍ରୀ ହନୁମାନ

ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମଙ୍କ ଦାସ୍ୟଭକ୍ତ ହିସାବରେ ଅଞ୍ଜନୀସୁତ କେଶରୀ ନନ୍ଦନଙ୍କ କୀର୍ତ୍ତି ସୀମିତ ନଥିଲା। ସେ ଦକ୍ଷିଣ ମାର୍ଗୀୟ ତନ୍ତ୍ରୋପାସକ ଓ ବାମମାର୍ଗୀୟ ତାନ୍ତ୍ରିକ ଦେବତା ଥିଲେ। ପୁଣି ଏକ ସାଥିରେ ଲୋକଦେବତା ବା ଜନଦେବତା ବି ଥିଲେ। ଆମ ଏ ଭାରତବର୍ଷରେ ଏମିତି କୌଣସି ପୁର ବା ପଲ୍ଲୀ ନାହିଁ ଯେଉଁଠି ମହାବୀର ହନୁମାନ୍ ପୂଜିତ ହେଉ ନାହାଁନ୍ତି। ସାଧାରଣ ଜନସମାଜରେ ବିଭିନ୍ନ ପ୍ରକାରର ଝଡ଼ାଫୁଙ୍କା ଅଭିଚାର ଆଦିରେ ତାଙ୍କର ପୂଜା ଉପାସନା କରାଯାଇଥାଏ। ଭାରତବର୍ଷରେ ବହୁ ଅପଦେବତା ବୀରଙ୍କ ଭିତରେ ବୀର ହନୁମାନ "ମହାବୀର" ବୋଲି କଥିତ ହୋଇଥାନ୍ତି। ମହାବୀରଙ୍କ ନାମ ଉଚ୍ଚାରଣରେ କେବେଳ ଭୂତ-ପିଶାଚ, ପ୍ରେତ ଯକ୍ଷ ଆଦି ଅପଦେବତା ସେଠାରୁ ଦୂରକୁ ପଳାଇ ଯାଇଥାନ୍ତି।

"ଭୂତ ପ୍ରେତ ପିଶାଚ ନହିଁ ଆୱେ
ମହାବୀର ଯବ ନାମ ଶୁଣାୱେ" (ହନୁମାନ ଚାଳିଶା ....)

କୌଣସି ଏକ ନିର୍ଜନ ଭୟପ୍ରଦ ସ୍ଥାନରେ ଯାତ୍ରା କଲାବେଳେ ଆମେ "ଜୟ ହନୁମାନ", "ଜୟ ମହାବୀର" କହି ନିର୍ଭୟ ହୋଇଯାଉ ।

ହନୁମାନଜୀଙ୍କର ତାନ୍ତ୍ରିକ ଉପାସନା ଯେଉଁଠି ଅତ୍ୟନ୍ତ କଠିନ ହୋଇଥାଏ ସେଠାରେ କେବଳ "ସଙ୍କଟମୋଚନ ହନୁମାନାଷ୍ଟକ" ଏବଂ "ହନୁମାନ ଚାଳିଶା" ବୋଲାଯାଇଥାଏ । ହନୁମାନଙ୍କର ଏହି ଲୋକପ୍ରଚଳିତ ଉପାସନା ସରଳ ଏବଂ ସର୍ବଜନସୁଲଭ ଅଟେ । ଏହି ପ୍ରକାରେ ସମସ୍ତ ଭାରତବର୍ଷରେ ତାଙ୍କର ପୂଜା ଉପାସନାର ଏତେ ପ୍ରଚାର ଓ ପ୍ରସାର ହୋଇପାରିଛି । ତେଣୁ ସେ ନିଶ୍ଚିତ ଭାବରେ "ଲୋକ ଦେବତା" ବା "ଜନଦେବତା" ଅଟନ୍ତି ।

x x x

ଜୀବ ଜଗତ ଭିତରେ ମଣିଷ ଭଗବାନଙ୍କର ଶ୍ରେଷ୍ଠ କଳାକୃତି । ଅମୃତର ସନ୍ତାନ ରୂପରେ ଖ୍ୟାତ । କେବଳ ବିବେକର ଅଧିକାରୀ ହେତୁ ବିବେକବନ୍ତ ଓ ବିଚାରବନ୍ତ । ତେଣୁ ଭଗବାନଙ୍କର ଅତି ନିକଟତମ ପ୍ରାଣୀ । କିନ୍ତୁ ସେ ମଣିଷର ସ୍ଥିତି ଓ ଗତି କଥା ଆଜି ବିଚାରନୀୟ । ଟିକେ ଆତ୍ମାନୁଶୀଳନ କଲେ ସହଜରେ ବୁଝିପାରିବା ଆମର ସତ୍ତ୍ୱ କଣ ଓ ସ୍ଥିତି କଣ ?

ସତ୍ୟାନନ୍ଦ ଚମ୍ପତିରାୟ